VOL. LI No. 4 UTKAL PRASANGA Regd. No. O—BN—05/90
Licence No. C.R.N.P. 5—Licensed to post without Pre-payment

ବିଶ୍ୱ ବ୍ୟାଙ୍କ ସହାୟତାରେ କାର୍ଯ୍ୟକାରୀ ହେଉଥିବା ରାଜଧାନୀ ହସ୍ପିଟାଲ ପରିସର ମଧ୍ୟରେ ଶିଶୁ ୱାର୍ଡ ଓ ଏକ ଅସ୍ତ୍ରୋପଚାର ଗୃହର ଭିତ୍ତିପ୍ରସ୍ତର ସ୍ଥାପନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କରୁଛନ୍ତି । ପୂର୍ତ୍ତ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି ଓ ସ୍ୱାସ୍ଥ୍ୟ ମନ୍ତ୍ରୀ ସୟଦ୍ ମୁସ୍ତାଫିଜ୍ ଅହମ୍ମଦ ଉପସ୍ଥିତ ଅଛନ୍ତି ।






ଭଦ୍ରଖ–କୋଠର ଆର୍‌ଡି ରାସ୍ତାର କପାଳି ନଦୀ ଉପରେ ନିର୍ମିତ ସେତୁକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି । ପୂର୍ତ୍ତ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି ଉପସ୍ଥିତ ଅଛନ୍ତି ।

PRINTED AT ORISSA GOVERNMENT PRESS, MADHUPATNA, CUTTACK—753 010

# ଉତ୍କଳ ପ୍ରସଙ୍ଗ

୫୧ ଭାଗ ୫ମ ସଂଖ୍ୟା ମାର୍ଗଶିର ୧୯୧୬ ଶକାବ୍ଦ ଡିସେମ୍ବର - ୧୯୯୪

## ସମ୍ପାଦକ ମଣ୍ଡଳୀ



**ମୁଦ୍ରଣ**
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦

**ପ୍ରକାଶକ**
**ଶ୍ରୀ ସୁରସେନ ଜେନା, ନିର୍ଦ୍ଦେଶକ**
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର
ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦·୦୦
ପ୍ରତି ଖଣ୍ଡ : ଟ ୨·୦୦

*ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଯୋଜନା ଓ ଅନ୍ୟାନ୍ୟ ସରକାରୀ କ୍ଷେତ୍ର ସମ୍ପର୍କିତ ବିବରଣୀ* ***"ଉତ୍କଳ ପ୍ରସଙ୍ଗ"****ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସମ୍ପର୍କିତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେହିଭଳି ବିଷୟଗୁଡ଼ିକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୁଦ୍ରିତ ପାଠ ବୋଲି ଭାବିବା ଉଚିତ ନୁହେଁ ।*

*ଲେଖକମାନଙ୍କ ମତାମତ ସୂଚନା ଓ ଲୋକ ସମ୍ପର୍କ ବିଭାଗ ସେମାନଙ୍କୁ ପ୍ରକାଶ ପାଇଥିଲେ ମଧ୍ୟ ଏହି ପତ୍ରିକାରେ ପ୍ରକାଶିତ* ***"ଉତ୍କଳ ପ୍ରସଙ୍ଗ"*** *ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।*

# ସୂଚୀ

# ସମ୍ପାଦକୀୟ

## ଦୁଇଟି ସଂକଳ୍ପ

ଓଡ଼ିଶାର ଆଲୌକିକ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଏକ ସମୟରେ ମୁନି ଋଷିମାନେ ତପସ୍ୟା କରି ସିଦ୍ଧିଲାଭ କରିପାରୁଥିଲେ। ଏପରିକି ଦସ୍ୟୁ ରତ୍ନାକର ମଧ୍ୟ ମୁନିଶ୍ରେଷ୍ଠ ବାଲ୍ମୀକିରେ ପରିଣତ ହୋଇ ପାରିଥିଲେ। ସେହିଭଳି କବିମାନେ ମଧ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଉପଭୋଗ କରି ଉଚ୍ଚ ଭାବମାନ ରଚନା କରିବା ନିମନ୍ତେ ପ୍ରକୃତି କୋଳରୁ ଯଥେଷ୍ଟ ଉପାଦାନ ପାଇଛନ୍ତି। ସଂକ୍ଷେପରେ କହିବାକୁ ଗଲେ ପ୍ରକୃତି ସବୁ ସମୟରେ ସମାଜ ପାଇଁ ସବୁ ଭାବରେ ଉପାଦେୟ ହୋଇ ଆସିଛି।

ପ୍ରକୃତିର ଦାନ ଅତୁଳନୀୟ ବୋଲି ଜାଣି ମଧ୍ୟ ଆମେ ପ୍ରକୃତିର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ନଷ୍ଟ ବିନଷ୍ଟ କରି ସାରିଲୁଣି। ସେ କାଳର ପ୍ରାକୃତିକ ସୌନ୍ଦର୍ଯ୍ୟ ଆଜି ଆଉ ନାହିଁ। ଫଳରେ ପ୍ରକୃତିର ରୂପ ମଧ୍ୟ ବଦଳିବାରେ ଲାଗିଛି। ଯେଉଁ ସମୟରେ ଯେତେ ପରିମାଣରେ ବର୍ଷା ହେବା କଥା ତା' ନହେବାରୁ ମରୁଡ଼ିଜନିତ ପରିସ୍ଥିତି ଜାରି ରହୁଛି। ଅପର ପକ୍ଷରେ ଅସମୟରେ ଅଯଥା ବୃଷ୍ଟି ହୋଇ ମଧ୍ୟ ବନ୍ୟାଜନିତ ପରିସ୍ଥିତି ଜାରି ରହୁଛି। ଧନ ଜୀବନ ମଧ୍ୟ ବିନାଶ ହେଉଛି। କେବଳ ସେତିକି ନୁହେଁ, ଜଳ ମାଟି ଓ ଜଳବାୟୁର ପରିବର୍ତ୍ତନ ଦ୍ୱାରା ଆମେ ଆମର ପୂର୍ବ ପୁରୁଷଙ୍କ ଭଳି ଦୀର୍ଘାୟୁ ହୋଇ ସୁସ୍ଥ ସବଳ ହେବା ପରିବର୍ତ୍ତେ ଦୁର୍ବଳ, ରୋଗାକ୍ରାନ୍ତ ହୋଇ ଅକାଳ ମୃତ୍ୟୁର ମଧ୍ୟ ଶିକାର ହେଉଛୁ।

ସବୁ ସମସ୍ୟାର ମୂଳରେ ରହିଛି ପ୍ରକୃତି ଓ ପରିବେଶ। ପରିବେଶ ସଜାଡ଼ି ହୋଇଗଲେ ସମସ୍ତ ସମସ୍ୟାର ସମାଧାନ ଆପେ ଆପେ ହୋଇଯିବ। ତେବେ ପ୍ରଶ୍ନ ଉଠୁଛି ପରିବେଶକୁ ସଜାଡ଼ିବ କିଏ ? କାହାର ଦାୟିତ୍ୱ ??

ପରିବେଶକୁ ସଜାଡ଼ିବା ଦାୟିତ୍ୱ କଥା ଚିନ୍ତା କଲେ ପ୍ରଥମ ଯେ ପରିବେଶ କାହାର ବ୍ୟକ୍ତିଗତ ସମ୍ପତ୍ତି ହୋଇପାରୁନ ନୁହେଁ। ଏହା ଜାତୀୟ ସମ୍ପତ୍ତି। ଆମେ ସମସ୍ତେ ଏହି ଜାତୀୟ ସମ୍ପତ୍ତିର ଅଂଶୀଦାର। ଅତଏବ ଜାତୀୟ ସମ୍ପତ୍ତିର ସୁରକ୍ଷା ବା ସଜାଡ଼ିବା ଦାୟିତ୍ୱ ମଧ୍ୟ ଆମ ସମସ୍ତଙ୍କର। ଏହି ଦାୟିତ୍ୱବୋଧକୁ ହୃଦୟଙ୍ଗମ କରି ସଂକଳ୍ପବଦ୍ଧ ହୋଇପାରିଲେ ଆମ ପରିବେଶ ସଜାଡ଼ି ହେବାକୁ ବେଶୀ ସମୟ ଲାଗିବ ନାହିଁ।

ସୁତରାଂ, ବର୍ତ୍ତମାନ ପରିସ୍ଥିତିରେ ଆମେ ସମସ୍ତେ ଆମର କର୍ତ୍ତବ୍ୟ ପ୍ରତି ସଚେତନ ହୋଇ ଦୁଇ ସଂକଳ୍ପ ନେବା ଉଚିତ। ପ୍ରଥମଟି ହେଲା–କୌଣସି ପରିସ୍ଥିତିରେ ମଧ୍ୟ ଗଛ କାଟିବା ନାହିଁ ଏବଂ ଦ୍ୱିତୀୟଟି ହେଲା–ନିଜର ଜନ୍ମଦିନକୁ ମନେ ରଖି ନିଜର ଉପସ୍ଥିତିରେ ବୃକ୍ଷ ରୋପଣ କରିବା।

# ଗାନ୍ଧିଜୀ ଓ ଖଦି ଗ୍ରାମୋଦ୍ୟୋଗ

ଶ୍ରୀ ଗାଦକିଶୋର ନାୟକ

ଭାରତ ଭଳି ଏକ ଗ୍ରାମ ବହୁଳ ଦେଶର ଅର୍ଥନୈତିକ ସ୍ୱାବଲମ୍ବନ ଶୀଳତା ପାଇଁ ଖଦି ଓ ଗ୍ରାମୋଦ୍ୟୋଗ ଯେ ଏକମାତ୍ର ଫଳପ୍ରଦ ସାଧନ—ତାହା ଆଜିକୁ ୭୫ ବର୍ଷ ତଳେ ୧୯୨୦ ମସିହାରେ ଗାନ୍ଧିଜୀ ଗଭୀର ଆତ୍ମବିଶ୍ୱାସର ସହ ଘୋଷଣା କରିଥିଲେ। ୧୯୧୬ ମସିହାର କଥା। ସ୍ୱାଧୀନତା ପାଇଁ ଗଣସଙ୍ଗଠନ କାର୍ଯ୍ୟରେ ଗାଁରୁ ଗାଁକୁ ବୁଲୁଥିବା ବେଳେ ଅହମଦାବାଦ ନିକଟବର୍ତ୍ତୀ ବିଜାପୁର ଗାଁରେ ଥରେ ଗାନ୍ଧିଜୀ ଚରଖାରେ ସୂତାକାଟୁଥିବା ଗୋଟିଏ ଗରିବ ପରିବାରର ସ୍ତ୍ରୀ ପୁରୁଷ ଓ ପିଲାମାନଙ୍କୁ ଭେଟିଥିଲେ। ଏହି ହାତକଟା ସୂତା ଓ ଏଥିରୁ ହାତତନ୍ତରେ ବୁଣାଯାଉଥିବା ଲୁଗା ଭାରତର ଗାଁ ଗହଳିରେ ଅର୍ଥନୈତିକ ଆତ୍ମନିର୍ଭରଶୀଳତା ଫେରାଇ ଆଣିପାରିବ ବୋଲି ସେହିଦିନ ତାଙ୍କ ମନରେ ଧାରଣା ସୃଷ୍ଟି ହୋଇଥିଲା। ହାତକଟା ସୂତାରୁ ହାତତନ୍ତରେ ବୁଣାଯାଉଥିବା ଲୁଗାକୁ ସେ 'ଖଦି' ବୋଲି କହିଲେ। ଗାଁର କୌଳିକ କାରିଗର, ଅସହାୟ ମହିଳା ଓ କୃଷି ଶ୍ରମିକମାନଙ୍କର ପାରମ୍ପରିକ କୃତିଗତ ଶିଳ୍ପକଳାକୁ ସେ 'ଗ୍ରାମୋତ୍‌ଦ୍ୟୋଗ' ବୋଲି କହିଲେ। ଖଦି ଓ ଗ୍ରାମୋଦ୍ୟୋଗ ମାଧ୍ୟମରେ ଗ୍ରାମାଞ୍ଚଳର ଗରିବ ଲୋକମାନଙ୍କର ଆର୍ଥିକ ମାନଦଣ୍ଡରେ ସୁଧାର ଆଣିବା ପାଇଁ ସେ ଆହ୍ୱାନ ଦେଲେ। ୧୯୨୩ ମସିହାରେ ଅଖିଳ ଭାରତୀୟ ଖଦିବୋର୍ଡ, ୧୯୨୫ ମସିହାରେ ଅଖିଳ ଭାରତୀୟ ଚରଖା ସଂଘ ଓ ୧୯୩୫ ମସିହାରେ ଅଖିଳ ଭାରତୀୟ ଗ୍ରାମୋଦ୍ୟୋଗ ମହାସଂଘ ଗଠନ କରାଗଲା। ଭାରତ ବର୍ଷର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଅନେକଗୁଡ଼ିଏ ଖଦି ଗ୍ରାମୋଦ୍ୟୋଗ ସଂଘ ଓ ସମିତିମାନ ଗଢ଼ିଉଠିଲା। ୨ଶହ ବର୍ଷର ପରାଧୀନତା ଫଳରେ ବିକଳ ବିପର୍ଯ୍ୟସ୍ତ ହୋଇପଡ଼ିଥିବା ଭାରତବର୍ଷର ଗ୍ରାମଜୀବନରେ ରଚନାତ୍ମକ କର୍ମଚଞ୍ଚଳତା ଫେରାଇ ଆଣିବା ଦିଗରେ ଏହି ସଂଘ ଓ ସମିତିଗୁଡ଼ିକ ଲାଗିପଡ଼ିଲେ। ଭାରତର ସ୍ୱାଧୀନତା ସଂଗ୍ରାମରେ ଏଗୁଡ଼ିକର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣଥିଲା।

ଖଦି ଓ ଗ୍ରାମୋଦ୍ୟୋଗର ଐତିହ୍ୟ ସମ୍ପର୍କରେ ଗାନ୍ଧିଜୀ ସଚେତନ ଥିଲେ। ଏହାକୁ ସେ ଏକ ବାସ୍ତବବାଦୀ ପ୍ରାଂଗଣିକ ଅର୍ଥନୈତିକ ସାଧନ ଭାବରେ ଗ୍ରହଣ କଲେ। ଖଦିକୁ ସ୍ୱଦେଶୀ ଆନ୍ଦୋଳନର ଏକ ଗୁରୁତ୍ୱପୂର୍ଣ୍ଣ ସାଧନ ଭାବରେ ଗ୍ରହଣ କରିବା ପଛରେ ଗାନ୍ଧିଜୀଙ୍କର ଗଭୀର ସାମାଜିକ ଓ ଅର୍ଥନୈତିକ ଅନୁଶୀଳନ ରହିଥିଲା। ଏହି ଅନୁଶୀଳନର ସିଦ୍ଧାନ୍ତ ଭାରତବର୍ଷ ପରିପ୍ରେକ୍ଷୀରେ ଆଜିକୁ ୭୫ ବର୍ଷ ତଳେ ଯେତିକି ଉପଯୋଗୀ ଥିଲା ଆଜି ମଧ୍ୟ ଠିକ୍ ସେତିକି ଉପଯୋଗୀ ହୋଇ ରହିଛି।

ଗାନ୍ଧିଜୀ ଓଡ଼ିଶା ଆସିଥିବା ସମୟରେ ପୁରୀଠାରେ ତାଙ୍କର ରହଣିକାଳରେ ଗୋଟିଏ ଲେଖା ଲେଖିଥିଲେ। ସେହି ଲେଖାଟି ୟଙ୍ଗଇଣ୍ଡିଆ ପତ୍ରିକାର ଅପ୍ରେଲ ୬, ୧୯୨୧ ସଂଖ୍ୟାରେ ପ୍ରକାଶିତ ହୋଇଥିଲା। ସେଥିରେ ସେ ଦର୍ଶାଇଥିଲେ ଯେ, ଭାରତର ଲକ୍ଷ ଲକ୍ଷ କୃଷକ ବର୍ଷମଧ୍ୟରେ ଅଧାରୁ ଅଧିକ ସମୟ କାମ ଅଭାବରୁ ବେକାର ରହୁଥିବା ଦୃଷ୍ଟିରୁ ସେମାନଙ୍କୁ ଯଦି ସୂତାକଟା ପାଇଁ ଚରଖା ଯୋଗାଇ ଦିଆଯାଏ—ତେବେ ସେମାନେ ଦାରିଦ୍ର୍ୟ ଓ ଦୁର୍ବିପାକ ବିରୋଧରେ ସଫଳତାର ସହ ସଂଗ୍ରାମ କରିପାରିବେ। ସେ ଲେଖିଥିଲେ, "I am writing this in Puri in front of the murmuring waves. The Picture of the crowd of Men, Women and Children with their fleshless ribs under the very shadow of Jagannath haunts me. If I had the power, I would suspend every other activity in Schools and Colleges and every where else and popularise spinning." ଏହି ଲେଖାରେ ସେ ଘୋଷଣା କରିଥିଲେ ଯେ ପର୍ଯ୍ୟାପ୍ତ ସଂଖ୍ୟକ ଉତ୍ସାହୀ କର୍ମଠ ତାଲିମପ୍ରାପ୍ତ ଦକ୍ଷ ଖଦିକର୍ମୀ ଯଦି ତାଙ୍କ ସହ କାମକରିବାକୁ ମିଳନ୍ତେ ତେବେ ବର୍ଷକ ଭିତରେ ସେ ଏଦେଶରୁ ଦାରିଦ୍ର୍ୟ ଦୂରକରି ଦେଇପାରିବେ। ଏଥିରୁ ଖଦି ଉପରେ ଥିବା ତାଙ୍କର ଅଟଳ ବିଶ୍ୱାସ ଓ ପ୍ରଗାଢ଼ ଭରସା ନିଷ୍ପନ୍ନ ଜାଣିହୁଏ। ସେ ଚରଖାକୁ 'କାମଧେନୁ' ବୋଲି କହୁଥିଲେ।

ଖଦି ଓ ଗ୍ରାମୋଦ୍ୟୋଗକୁ ସେ ଭାରତବର୍ଷର ଜାତୀୟତାର ପ୍ରତୀକ ଭାବରେ ଗ୍ରହଣ କରିଥିଲେ। ଗ୍ରାମାଞ୍ଚଳରେ ଆତ୍ମନିୟୋଜନ ଓ ଆତ୍ମନିର୍ଭରତା ଏହା ହିଁ ଖଦି ଗ୍ରାମୋଦ୍ୟୋଗର ମୂଳ ଆଭିମୁଖ୍ୟ ଥିଲା। ଏହା ଭାରତବର୍ଷର ସାମାଜିକ, ଆଧ୍ୟାତ୍ମିକ, ସାଂସ୍କୃତିକ ଓ ସର୍ବୋପରି ଅର୍ଥନୈତିକ ସମୃଦ୍ଧି ସାଧନ କରିପାରିବ ବୋଲି ସେ ଜାଣିଥିଲେ। ଖଦି ଗ୍ରାମୋଦ୍ୟୋଗ ଓ ଅନ୍ୟ ମଧ୍ୟମ ବା ବୃହତ୍ ଶିଳ୍ପମଧ୍ୟରେ ଯେଉଁସବୁ ମୌଳିକ ପ୍ରଭେଦ ରହିଛି, ତାହାକୁ ସେ ଗଭୀର ଭାବରେ ଅନୁଶୀଳନ କରିଥିଲେ। ପୁଞ୍ଜି ଓ ଯନ୍ତ୍ରଭିତ୍ତିକ ଓ ଅନ୍ୟ ମଧ୍ୟମ ବା ବୃହତ ଶିଳ୍ପଗୁଡ଼ିକରେ 'ପୁଞ୍ଜି' ଓ ପୁଞ୍ଜିବାଦୀ ଚିନ୍ତାଧାରାର ପ୍ରାଧାନ୍ୟ ଥିବାବେଳେ ଖଦି

ଗ୍ରାମୋଦ୍ୟୋଗରେ କର୍ମୀ ଓ ସାମାଜିକ ସହାବସ୍ଥାନର ପ୍ରାଧାନ୍ୟ ରହିଛି । ଏଥିପାଇଁ ଗୋଟିଏ ସୁନ୍ଦର ଉଦାହରଣ ଏଠାରେ ଦିଆଯାଇପାରେ । ଗୋଟିଏ ଟଙ୍କାର ଖଦି ବିକ୍ରି ହେଲେ ସେଥିରୁ ୫୦ ପଇସା ସିଧାସଳଖ କର୍ମୀପାଖକୁ ଯାଏ, ମାତ୍ର ମିଲ୍‌ଲୁଗା କ୍ଷେତ୍ରରେ ଗୋଟିଏ ଟଙ୍କାରେ ୧୦ ପଇସାରୁ କମ୍ ଯାଏ କର୍ମୀ ପାଖକୁ ।

ଖଦି ଗ୍ରାମୋଦ୍ୟୋଗକୁ ଗାନ୍ଧିଜୀ ଏକ ଜାତୀୟତାବାଦୀ ଅର୍ଥନୈତିକ ଆନ୍ଦୋଳନ ଭାବରେ ଆରମ୍ଭ କରିଥିଲେ । ଏବେ ମଧ୍ୟ ଓ ଆଜିଠାରୁ ଅନେକ ବର୍ଷ ପର୍ଯ୍ୟନ୍ତ ଏହାର ଉପଯୋଗିତା ଅପରିବର୍ତ୍ତିତ ରହିଛି ଓ ରହିବ ।

ଗ୍ରାମଗୁଡ଼ିକୁ ସୁନ୍ଦର, ଜୀବନ୍ତ ଓ କର୍ମଚଞ୍ଚଳ କରାଇବା ପାଇଁ ଗାନ୍ଧିଜୀ ଖଦି ଓ ଗ୍ରାମୋଦ୍ୟୋଗର ପ୍ରସାର ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଗ୍ରାମାଞ୍ଚଳର ଗରିବ କୃଷକଟି ଅଥବା କାରିଗରଟି ଅଥବା ଅସହାୟା ମହିଳାଟି ଯେପରି ତା'ନିଜ ଗାଁରେ ନିଜ ଘରେ ବସି କାମ ପାଇବ ଓ ପରିବାରର ଭରଣପୋଷଣ ପାଇଁ ସକ୍ଷମ ହେବ ତାହା ହିଁ ଥିଲା ମହାତ୍ମାଙ୍କର ସ୍ୱପ୍ନର ଭାରତର ଚିତ୍ର ।

ଏ କଥା ସତ୍ୟ ଯେ ଦେଶ ସ୍ୱାଧୀନ ହେବାପରେ ଜାତୀୟ ସ୍ତରରେ ଖଦି ଗ୍ରାମୋଦ୍ୟୋଗ କମିଶନ ଓ ରାଜ୍ୟ ସ୍ତରରେ ଖଦି ଗ୍ରାମୋଦ୍ୟୋଗ ବୋର୍ଡ଼ମାନ ଗଠନ କରାଯାଇଛି ଏବଂ ସରକାରୀ ପୃଷ୍ଠପୋଷକତାରେ ଖଦି ଗ୍ରାମୋଦ୍ୟୋଗର ପ୍ରସାର ପାଇଁ କାର୍ଯ୍ୟାନୁଷ୍ଠାନମାନ ଗ୍ରହଣ କରାଯାଇଛି । ମାତ୍ର ଏହାର ପ୍ରସାର ଯେଭଳି ଭାବରେ ହେବାକଥା ସେପରି ହୋଇନାହିଁ । ଗାନ୍ଧିଜୀ ଖଦିକୁ 'ଗଣବସ୍ତ୍ର' ଭାବରେ ଗ୍ରହଣ କରିବାକୁ ଆହ୍ୱାନ ଦେଇଥିଲେ, ମିଲ୍‌ଲୁଗା ବର୍ଜନ କରିବା ପାଇଁ ଆହ୍ୱାନ ଦେଇଥିଲେ । ରାଜନୈତିକ ଦୃଷ୍ଟିକୋଣରୁ ଏହା ଯେପରି ଆବେଗପୂର୍ଣ୍ଣ ଥିଲା–ଅର୍ଥନୈତିକ ଦୃଷ୍ଟିକୋଣରୁ ମଧ୍ୟ ଏହା ଠିକ୍ ସେହିଭଳି ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ମାତ୍ର ପରବର୍ତ୍ତୀକାଳରେ ଖଦି ଓ ଗ୍ରାମୋଦ୍ୟୋଗ ପରିସର ମଧ୍ୟରେ ଆସୁଥିବା ସାମଗ୍ରୀଗୁଡ଼ିକ ମଧ୍ୟମ, ବୃହତ ଓ ଅତିବୃହତ ଶିଳ୍ପ ସଂସ୍ଥାଗୁଡ଼ିକରେ ଉତ୍ପାଦନ କରାଗଲା, ସାଧାରଣ ଲୋକଙ୍କୁ ସାମଗ୍ରୀର ଗୁଣାତ୍ମକ ଉତ୍କର୍ଷ ଓ ସାମାଜିକ ଗୁରୁତ୍ୱ ବଦଳରେ ବିଭିନ୍ନ ପ୍ରସ୍ତର ଓ ଗଣମାଧ୍ୟମ ଜରିଆରେ ବିଭ୍ରାନ୍ତ କରାଗଲା । ଖଦି ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମ ରୂପାୟନ ଦାୟିତ୍ୱରେ ଅବସ୍ଥାପିତ ବ୍ୟକ୍ତିବିଶେଷ, ଅଧିକାରୀ ଓ କାର୍ଯ୍ୟକର୍ତ୍ତାମାନଙ୍କର ନିଷ୍ଠା ଓ ଗାନ୍ଧିବାଦୀ ଅର୍ଥନୈତିକ ଚିନ୍ତାର ଉପରେ ବିଶ୍ୱାସ ମଧ୍ୟ ଏ କ୍ଷେତ୍ରରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ଏବେ ଆମ ଦେଶ ଆଗରେ ଅସଂଖ୍ୟ ଅର୍ଥନୈତିକ ସମସ୍ୟା, ସାମାଜିକ ସଙ୍କଟ ନୈତିକ ମୂଲ୍ୟବୋଧରେ ଅବକ୍ଷୟ ଜନିତ ସମସ୍ୟାମାନ ସୃଷ୍ଟି ହୋଇଛି । ଏହାର ଗୋଟିଏ ସୁନ୍ଦର ଉଦାହରଣ ମୁଁ ଏଠି ଦେବି । ଗାଁରୁ କାମ ଖୋଜି ସହରକୁ ଆସୁଥିବା ଲୋକଙ୍କ ଭିତରୁ ଅଧିକାଂଶ ସହରରେ ମଧ୍ୟ ଠିକ୍ ଭାବରେ କାମ ପାଉନାହାନ୍ତି । ସେମାନଙ୍କ ମଧ୍ୟରୁ କେତେଙ୍କ ମନରେ ସହରୀ ପ୍ରଲୋଭନର ପ୍ରଭାବ ଫଳରେ ସହରତଳି, ବସ୍ତିଅଞ୍ଚଳର ଅସାମାଜିକ କାର୍ଯ୍ୟକଳାପରେ ପେଶାଦାରୀମାନ ଗଢ଼ିଉଠୁଛି । ଗାଁରୁ କାମ ଖୋଜି ସହରକୁ ଆସୁଥିବା ସରଳ ଗରିବ ଲୋକଟି ଅପରାଧ ଚକ୍ରର କୁଖ୍ୟାତ ମାଲିକମାନଙ୍କ ହାତରେ କ୍ରୀଡ଼ନକ ହୋଇ ଅସାମାଜିକ ଲୋକରେ ପରିଣତ ହେଉଛି । ତାହାର ଅର୍ଥନୈତିକ ସମସ୍ୟାର ସମାଧାନ ତ ହେଉନାହିଁ, ବରଂ ତା'ର ସାମାଜିକ, ନୈତିକ ଓ ସାଂସ୍କୃତିକ ଜୀବନ ମଧ୍ୟ ଛାରଖାର ହୋଇଯାଉଛି । ଖଦି ଗ୍ରାମୋଦ୍ୟୋଗ ବ୍ୟକ୍ତିର ଅର୍ଥନୈତିକ ସ୍ୱାବଲମ୍ବନଶୀଳତା ସହିତ ସମାଜର ସୌଷ୍ଠବପୂର୍ଣ୍ଣ ବିକାଶ ପାଇଁ ଗାନ୍ଧିଜୀଙ୍କର ଏକ ଅନବଦ୍ୟ ଅବଦାନ ।

ମହାତ୍ମାଜୀଙ୍କର ସ୍ୱପ୍ନର ଭାରତବର୍ଷ ଗଠନ ପାଇଁ ଏବେ ମଧ୍ୟ ଆମେ ନିଜ ନିଜ କ୍ଷେତ୍ରରେ କିଛି କିଛି ସହଯୋଗ କରିପାରିବା । ଏବେ ଆମ ପାଖରେ ସରକାରୀପୃଷ୍ଠ ପୋଷକତା ରହିଛି, ଆବଶ୍ୟକ ପାଣ୍ଠି ମଧ୍ୟ ରହିଛି । ଲୋଡ଼ା କେବଳ ନିଷ୍ଠା, ଉତ୍ସାହ, ଉଦ୍‌ଯୋଗ ଓ ସଚେତନ । ରାଜ୍ୟସ୍ତରରେ ଖଦିବୋର୍ଡ଼ ଅଛି । କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବା ପାଇଁ ଜିଲ୍ଲାସ୍ତରରେ ହସ୍ତକଳା ଓ କୁଟୀର ଶିଳ୍ପ କାର୍ଯ୍ୟାଳୟ ରହିଛି, ବ୍ଲକ ସ୍ତରରେ ଅଛନ୍ତି ଶିଳ୍ପ ବିକାଶ ଅଧିକାରୀ ଓ ପର୍ଯ୍ୟବେକ୍ଷକମାନେ । ଗ୍ରାମାଞ୍ଚଳର ଗରିବ, ଅସହାୟା ମହିଳା ଓ ବେକାର ଯୁବକ ଯୁବତୀମାନଙ୍କୁ ସେମାନଙ୍କ ଗ୍ରାମରେ ଆତ୍ମନିଯୋଜନର ସୁଯୋଗ ଦେବା ଦିଗରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଏସବୁ ଅନୁଷ୍ଠାନ, ଅଧିକାରୀ ଓ କର୍ମୀମାନଙ୍କର କର୍ତ୍ତବ୍ୟ, ଗାଁ ଗହଳିର ଏହିସବୁ ଗରିବ ଅସହାୟ ଲୋକମାନଙ୍କ ପ୍ରତି ଆମ ସମସ୍ତଙ୍କ ମନରେ ଦରଦ ରହିବା ଆବଶ୍ୟକ ବୋଲି ଗାନ୍ଧିଜୀ କହୁଥିଲେ । ଆସନ୍ତୁ, ଆମେ ସମସ୍ତେ ସଚେତନ ଭାବରେ ମିଳୁଥିବା ସୁଯୋଗର ସଦୁପଯୋଗ କରିବା ଓ ଖଦି ଗ୍ରାମୋଦ୍ୟୋଗ ଜରିଆରେ ସୁନ୍ଦର ଭାରତବର୍ଷ ଗଠନ କାର୍ଯ୍ୟରେ ଲାଗିପଡ଼ିବା ।

**ସଭାପତି,**
**ଓଡ଼ିଶା ଖଦୀ ଓ ଗ୍ରାମୋଦ୍ୟୋଗ ବୋର୍ଡ଼ ।**



# ୧୪ଶ ଆନ୍ତର୍ଜାତିକ ବାଣିଜ୍ୟ ମେଳା ଓ ଓଡ଼ିଶା ମଣ୍ଡପ

**ଡକ୍ଟର ଶଶଧର ଦାସ**

ଭାରତର ରାଜଧାନୀ ନୂଆଦିଲ୍ଲୀର ପ୍ରଗତି ମଇଦାନଠାରେ ପ୍ରତି ବର୍ଷ ପରି ଚଳିତ ବର୍ଷ ମଧ୍ୟ ନଭେମ୍ବର ୧୪ ତାରିଖ ଦିନ ଭାରତ ଆନ୍ତର୍ଜାତିକ ବାଣିଜ୍ୟ ମେଳା ଉଦ୍‌ଘାଟିତ ହୋଇଥିଲା । ଏହା ଥିଲା ୧୪ଶ ବାଣିଜ୍ୟ ମେଳା । ପ୍ରଗତି ମଇଦାନରେ ଅନୁଷ୍ଠିତ ଏହି ବାଣିଜ୍ୟ ମେଳାକୁ ସ୍ୱଚକ୍ଷୁରେ ନଦେଖିଲେ ଏହାର ଉଦ୍ଦେଶ୍ୟ, ଆଭିମୁଖ୍ୟ ଓ ସୁଦୂର ପ୍ରସାରୀ ଚିନ୍ତାଧାରାକୁ ସହଜରେ କେହି ଉପଲବ୍ଧି କରି ପାରିବେ ନାହିଁ । ବାସ୍ତବରେ ଏହି ବାଣିଜ୍ୟ ମେଳା ଭାରତର ବିଭିନ୍ନ ରାଜ୍ୟ, କେନ୍ଦ୍ର ଶାସିତ ଅଞ୍ଚଳ ତଥା ଦେଢ଼େକ ବିଦେଶୀ ରାଷ୍ଟ୍ର ସମୂହର ଔଦ୍ୟୋଗିକ ଅଭିବୃଦ୍ଧି ତଥା ଉତ୍ପାଦିତ ସାମଗ୍ରୀର ଏକ ସୁସଜ୍ଜିତ, ସୁବିନ୍ୟସ୍ତ ବିପଣୀ । ଜାତି, ଧର୍ମ, ଭାଷା, ଆଞ୍ଚଳିକତାର ଊର୍ଦ୍ଧ୍ୱରେ ଏହି ବାଣିଜ୍ୟ ମେଳା ମହାଭାରତୀୟ ଐକ୍ୟ ତଥା ସଂହତିର ଏକ ମହାମିଳନ, ସଂପ୍ରୀତିର ବର୍ଣ୍ଣାଢ଼୍ୟ ମହୋତ୍ସବ । ରାଜ୍ୟ–ରାଜ୍ୟ ତଥା ବିଦେଶୀ ରାଷ୍ଟ୍ର ସହିତ ବାଣିଜ୍ୟିକ ସମ୍ପର୍କ ପ୍ରତିଷ୍ଠାର ଏହା ଏକ ଅଭିନବ ଉଦ୍ୟମ । ଆଜି ଯେତେବେଳେ ଆମ ଚିନ୍ତା–ଚେତନା ତଥା ଦୃଷ୍ଟି ଓ ଦର୍ଶନରେ ବିଭିନ୍ନ କାରଣରୁ ମତାନୈକ୍ୟ ସୃଷ୍ଟି ହୋଇ ଜାତୀୟ ସଂହତିର ବାଧକ ହେବାରେ ଲାଗିଛି, ମହାଭାରତୀୟ ଏକତା ଓ ସଂହତି ଯେତେବେଳେ ବିଭିନ୍ନ କାରଣରୁ ବିପର୍ଯ୍ୟସ୍ତର ଦ୍ୱାର ଦେଶରେ ଉପନୀତ, ସେତେବେଳେ ଭାରତ ଆନ୍ତର୍ଜାତିକ ବାଣିଜ୍ୟ ମେଳା ଯେ ରାଷ୍ଟ୍ରୀୟ ଚେତନା ସୃଷ୍ଟିରେ ସହାୟକ ହୋଇ ପାରିବ, ଏଥିରେ ସନ୍ଦେହର ଅବକାଶ ନଥାଇପାରେ । ଦୀର୍ଘ ୧୪ ବର୍ଷ ଧରି ପବିତ୍ର ଶିଶୁ ଦିବସଠାରୁ ଦୁଇ ସପ୍ତାହ ବ୍ୟାପୀ ପାଳିତ ହୋଇ ଆସୁଥିବା ଏହି ମେଳାର ଆକୃତି କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି ଏବଂ ଏହାର ଆଭିମୁଖ୍ୟ ଓ ସୁଦୂର ପ୍ରସାରୀ ଲକ୍ଷ୍ୟ ଭାରତୀୟ ଜନଗଣ ନିକଟରେ କ୍ରମଶଃ ସ୍ପଷ୍ଟ ହୋଇ ଉଠୁଛି ।

ଦିଲ୍ଲୀର ପ୍ରଗତି ମଇଦାନଠାରେ ଭାରତର ପ୍ରତ୍ୟେକ ରାଜ୍ୟ ଓ ବିଦେଶୀ ରାଷ୍ଟ୍ରଗୁଡ଼ିକ ପାଇଁ ପୃଥକ୍ ପୃଥକ୍ ସ୍ଥାୟୀ ମଣ୍ଡପମାନ ନିର୍ମିତ ହୋଇ ରହିଛି । ବର୍ଷର ଅନ୍ୟାନ୍ୟ ଦିନମାନଙ୍କରେ ଜନ ଶୂନ୍ୟତାର ନୀରବତାକୁ ବଡ଼ କଷ୍ଟରେ ସହି ଆସୁଥିବା ପ୍ରଗତି ମଇଦାନ ହଠାତ୍ ନଭେମ୍ବର ମାସର ଆଦ୍ୟ ଭାଗରେ ପ୍ରାଣବନ୍ତ ହୋଇ ଉଠେ । ନଭେମ୍ବର ମାସର ଦିଲ୍ଲୀ ଯେତେବେଳେ ପ୍ରଚଣ୍ଡ ଶୀତରେ ଥରି ଉଠେ, ସେତେବେଳେ ପ୍ରଗତି ମଇଦାନରେ ସତେ ଅବା ଓହ୍ଲାଇ ଆସେ ଋତୁରାଜ ବସନ୍ତ । ମଇଦାନର ଭରିଥାଏ ରଙ୍ଗ, ବେରଙ୍ଗର ବିବିଧ ଦ୍ରବ୍ୟରାଜିର ଅପୂର୍ବ ସମାବେଶ । ସତେ ଅବା ଫଗୁଣର ବର୍ଣ୍ଣୋତ୍ସବ । ପୁଲକିତ ହୋଇ ଉଠେ ନିଥର ମଇଦାନର ଶୁଷ୍କ ମାଟି । ମଣିଷର କୋଳାହଳରେ ମୁଖରିତ ହୁଏ ମଇଦାନର ଆକାଶ । ପ୍ରଗତିଶୀଳ ମଣିଷର ସବୁ ବ୍ୟବଧାନ ସତେ ଯେମିତି ମୁହୂର୍ତ୍ତକ ପାଇଁ ହଜିଯାଏ ସେହି ମହା ବିପଣୀରେ । ଏହି କିଛି ଦିନ ପାଇଁ ପ୍ରଗତି ମଇଦାନ ପାଲଟି ଯାଏ ଏକ ମିନି ଭାରତବର୍ଷ, ଯେଉଁଠାରେ ସବୁ ରାଜ୍ୟର ଆଞ୍ଚଳିକ ଓ ଆର୍ଥିକ ସ୍ଥିତି ସହଜରେ ଉପଲବ୍ଧି କରି ହୁଏ । ସବୁ ରାଜ୍ୟର ମଣିଷଙ୍କୁ ଏକତ୍ର ଦେଖିବାର ସୁଯୋଗ ମିଳେ । ବାଣିଜ୍ୟ ମେଳାର ଅଂଶୀଦାର, ଦର୍ଶକ, ବିକ୍ରେତା ଓ କ୍ରେତା ଭାବରେ ନିଜକୁ ଭାରତୀୟ ବୋଲି ବିଚାର କରି ମହାଭାରତୀୟତାର ଗର୍ବ ଅନୁଭବ କରୁଥିବା ସ୍ୱଚ୍ଛ ଭାରତୀୟ ମଣିଷଙ୍କୁ ଖୋଜି ପାଇବାର ଏଇ ଏକ ସୁବର୍ଣ୍ଣ ସୁଯୋଗ । ଖୁସି ଓ ଗୌରବର କଥା ଯେ ୧୪ ବର୍ଷ ପୂର୍ବେ ଏହି ବାଣିଜ୍ୟ ମେଳା ଯେପରି ଭାବରେ ଜନ୍ମ ନେଇଥିଲା, ଆଜି ତାହା କ୍ରମବର୍ଦ୍ଧିଷ୍ଣୁ ଭାବରେ ଏକ ବୃହତ୍ତର ପରିସର ଆଡ଼କୁ ଆଗେଇ ଚାଲିଛି । ବିଶ୍ୱ ଦରବାରରେ ଭାରତୀୟ ସାମଗ୍ରୀର ଚାହିଦା ବୃଦ୍ଧି ପାଇବାରେ ଏହି ବାଣିଜ୍ୟ ମେଳା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସୁଛି ।

## ଓଡ଼ିଶା ମଣ୍ଡପ :

ଭାରତର ଅନ୍ୟାନ୍ୟ ରାଜ୍ୟଗୁଡ଼ିକ ତୁଳନାରେ ଚଳିତ ବର୍ଷର ବାଣିଜ୍ୟ ମେଳାରେ ଓଡ଼ିଶା ମଣ୍ଡପ ଥିଲା ଦର୍ଶକମାନଙ୍କ ପାଇଁ ଅଧିକ ଆକର୍ଷଣୀୟ । ବିଗତ ବର୍ଷଗୁଡ଼ିକ ତୁଳନାରେ ଚଳିତ ବର୍ଷ ଏହି ମଣ୍ଡପର ସାଜସଜ୍ଜାରେ ନୂତନତ୍ୱ ଓ ଅଭିନବ କଳା–କୌଶଳ ଦେଖିବାକୁ ମିଳିଥିଲା । ଉତ୍କଳୀୟ କଳାର ଉତ୍କର୍ଷତା ପ୍ରଦର୍ଶନ କରିବାକୁ ଯାଇ ବିଶ୍ୱ ବିଖ୍ୟାତ କୋଣାର୍କ ମନ୍ଦିରର ଅନୁକରଣରେ ଚଳିତ ବର୍ଷର ମଣ୍ଡପ ଚିତ୍ତାକର୍ଷକ ଭାବେ ସୁସଜ୍ଜିତ ହୋଇଥିଲା । ରଥଚକ୍ର ଉପରେ ସ୍ୱର୍ଣ୍ଣାଭ ସୂର୍ଯ୍ୟ ଖଚିତ ହୋଇ ଏହି ମଣ୍ଡପ ଏକ ପାଷାଣର ଦୃଶ୍ୟ ପରି ପ୍ରତୀୟମାନ ହେଉଥିଲା । ଦର୍ଶକର ଦୃଷ୍ଟି ଆକର୍ଷଣ କରିବା ପାଇଁ ପିପିଲି ଚିଆରି ପୃଥିବୀ ବିଖ୍ୟାତ ଚାନ୍ଦୁଆ ଓ କାରୁକାର୍ଯ୍ୟ ଖଚିତ ସୁନ୍ଦର ରଙ୍ଗୀନ ଓ କନାରେ ମଣ୍ଡପର ବିଭିନ୍ନ ଅଂଶକୁ ଯେପରି ସୁସଜ୍ଜିତ କରାଯାଇଥିଲା, ତାହା ଯେ କୌଣସି ଦର୍ଶକଙ୍କୁ ଓଡ଼ିଶା ମଣ୍ଡପ ନିକଟରେ କିଛିକ୍ଷଣ ପାଇଁ ଅଟକାଇବାକୁ ସକ୍ଷମ ହୋଇଥିଲା । ଏହା ସାଙ୍ଗକୁ ବିଭିନ୍ନ ରଙ୍ଗର ଆଲୋକମାଳା ମଣ୍ଡପର ଶୋଭା ବର୍ଦ୍ଧନ କରୁଥିଲା । ଦିଲ୍ଲୀ ନଗରୀରେ ଶୀତଳ

ସନ୍ଧ୍ୟା ନଇଁ ଆସିଲେ ପ୍ରଗତି ମଇଦାନର ସବୁ ମଣ୍ଡପଗୁଡ଼ିକ ପରି ଓଡ଼ିଶା ମଣ୍ଡପର ବିଚିତ୍ର ଆଲୋକମାଳା ଦର୍ଶକଙ୍କୁ ଆକୃଷ୍ଟ କରେ । ଦେଶ ଓ ବିଦେଶର ବହୁ ଦର୍ଶକଙ୍କ ମୁଖରୁ ଚଳିତ ବର୍ଷର ଓଡ଼ିଶା ମଣ୍ଡପର ଅପୂର୍ବ ସାଜସଜ୍ଜାର ଭୂୟସୀ ପ୍ରଶଂସା ଶୁଣିବାକୁ ମିଳିଥିଲା ।

ପ୍ରଗତି ମଇଦାନର ଏହି ଓଡ଼ିଶା ମଣ୍ଡପ ଓ ଓଡ଼ିଶାର ବାଣିଜ୍ୟ ବେପାର ଦେଖିବା ପରେ ପ୍ରତ୍ୟେକ ଓଡ଼ିଆ ମନରେ ଅତୀତର ନୌ-ବାଣିଜ୍ୟ ଇତିହାସର ଅସଷ୍ଟ ଛବି ସ୍ୱତଃ ଆଙ୍କି ହୋଇଯାଏ । ଓଡ଼ିଶାର ସାଧବ ପୁଅ ସାତ ସମୁଦ୍ର ତେର ନଈ ପାରି ହୋଇ ସମୁଦ୍ର ବକ୍ଷରେ ବୋଇତ ଯାତ୍ରୀ କରି ନିଜ ରାଜ୍ୟର ସାମଗ୍ରୀ ନେଇ ସୁଦୂର ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ଦ୍ୱୀପରେ ବେପାର ବାଣିଜ୍ୟ କରୁଥିଲେ । ବିଦେଶରୁ ଧନ, ରତ୍ନ ଆଣି ଏ ରାଜ୍ୟକୁ ସମୃଦ୍ଧ କରି ପାରିଥିଲେ । ସେହି ପ୍ରଚଣ୍ଡ ଦୁଃସାହସିକ ଦୁର୍ଦ୍ଧର୍ଷ ବୀର ଓଡ଼ିଆ ଜାତି ତା'ର ମହାନ୍ ସଂସ୍କୃତି ଓ ନୌ-ବାଣିଜ୍ୟ ପରମ୍ପରାକୁ କ୍ରମଶଃ ଭୁଲି ଯାଉଥିବାରୁ ବିଶ୍ୱ ସଂସ୍କୃତି ନିକଟରେ ଓଡ଼ିଶା ଆଜି ବହୁ ପଛରେ ପଡ଼ିଯାଇଛି । ଏଥିପାଇଁ ରାଜ୍ୟ ସରକାରଙ୍କ ତରଫରୁ ସେହି ଐତିହାସିକ ପରମ୍ପରାର ପୁନରୁଦ୍ଧାର ପାଇଁ ଶୁଭ ଉଦ୍ୟମ ଆରମ୍ଭ ହୋଇଛି । ସେହି ଉଦ୍ୟମର ଆଉ ଏକ ଅଗ୍ରଗାମୀ ପଦକ୍ଷେପ ହେଉଛି ଚଳିତ ବର୍ଷର ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ ଓଡ଼ିଶା ସାମଗ୍ରୀର ବହୁଳ ପ୍ରଦର୍ଶନୀ ଓ ବିକ୍ରୟ ଯୋଗ୍ୟତା । ବିଗତ ବର୍ଷମାନଙ୍କ ତୁଳନାରେ ଚଳିତ ବର୍ଷ ଓଡ଼ିଶା ମଣ୍ଡପରେ ଧାର୍ଯ୍ୟ ଲକ୍ଷ୍ୟଠାରୁ ଅଧିକ ପରିମାଣର ବିକ୍ରୟ ହୋଇଥିବାର ଜଣାଯାଇଛି । ଏହି ମେଳା ଉଦ୍‌ଘାଟନର ପ୍ରଥମ ଛଅ ଦିନ ମଧ୍ୟରେ ଓଡ଼ିଶା ମଣ୍ଡପରୁ ୨୩ ଲକ୍ଷ ଟଙ୍କା ମୂଲ୍ୟର ସାମଗ୍ରୀ ବିକ୍ରି ହୋଇଛି । ଏହା ଗତ ବର୍ଷର ସମୁଦାୟ ବିକ୍ରୟ ମୂଲ୍ୟର ହାରଠାରୁ ଯଥେଷ୍ଟ ଅଧିକ ବୋଲି କୁହାଯାଉଛି । ବିଗତ ବର୍ଷ ଓଡ଼ିଶା ମଣ୍ଡପର ସମୁଦାୟ ୧୫ ଲକ୍ଷ ଟଙ୍କା ମୂଲ୍ୟର ସାମଗ୍ରୀ ବିକ୍ରୟ ହୋଇଥିବା ବେଳେ ଚଳିତ ବର୍ଷ ବାଣିଜ୍ୟ ମେଳା ଶେଷ ସୁଦ୍ଧା ଏହା ୫୦ ଲକ୍ଷ ଟଙ୍କାରେ ପହଞ୍ଚି ପାରିଛି ।

ଓଡ଼ିଶା ମଣ୍ଡପରେ ଓଡ଼ିଶାର ପାରମ୍ପରିକ ହସ୍ତଶିଳ୍ପ ସହିତ ଆଲୁମିନିୟମ, ଲୌହ, ଆଜ୍‌ବେଷ୍ଟସ୍ ପ୍ରଭୃତିର ଯଥେଷ୍ଟ ଚାହିଦା ଦେଖା ଦେଇଥିଲା । ପିପିଲି ପ୍ରସ୍ତୁତ ହସ୍ତଶିଳ୍ପ ସାମଗ୍ରୀ, ସମ୍ବଲପୁରୀ ବସ୍ତ୍ର, ତାରକସି, ଶିଙ୍ଗ କାମ, ପାଟଲୁଗା ପ୍ରଭୃତି ହସ୍ତତନ୍ତ ବସ୍ତ୍ର ଓ ଓଡ଼ିଶୀ ହସ୍ତଶିଳ୍ପ ଦର୍ଶକମାନଙ୍କୁ ବହୁଳ ଭାବରେ ଆକୃଷ୍ଟ କରିଥିଲା ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହେଉଛି ଇଂଲଣ୍ଡ, ସିଙ୍ଗାପୁର ଓ ଦୁବାଇ ଆଦି ଦେଶ ଓଡ଼ିଶାରେ ତିଆରି ହେଉଥିବା ବିଭିନ୍ନ ପ୍ରକାର ମସଲା, ହଳଦୀ ଓ ସେରାମିକ୍ ଇତ୍ୟାଦି ଉପରେ ଅଧିକ ଗୁରୁତ୍ୱ ପ୍ରଦର୍ଶନ କରିଛନ୍ତି ଏବଂ ଏହା ବିଶ୍ୱ ବଜାରରେ ଖୁବ୍ ଶୀଘ୍ର ଲୋକପ୍ରିୟ ହେବ ବୋଲି ଆଶା କରାଯାଏ । ଓଡ଼ିଶାରେ ଆଲୁମିନିୟମ୍ ଓ ଲୌହ ନିର୍ମିତ ସାମଗ୍ରୀ ବିଦେଶୀ ରାଷ୍ଟ୍ରର ଦୃଷ୍ଟି ଆକର୍ଷଣ କରୁଛି ଏବଂ ଚଳିତ ବର୍ଷର ବାଣିଜ୍ୟ ଅନୁସନ୍ଧାନ କେନ୍ଦ୍ରରେ ମଧ୍ୟ ଏ ସବୁର ଚାହିଦା ବୃଦ୍ଧି ପାଇଥିବାର ଜଣାଯାଇଛି । ବିଶ୍ୱ ବାଣିଜ୍ୟ ପରିପ୍ରେକ୍ଷୀରେ ଓଡ଼ିଶାର ସାମଗ୍ରୀର ଚାହିଦା ବୃଦ୍ଧି ତଥା ଲୋକପ୍ରିୟତା ଅର୍ଜନ ଆମ ପୂର୍ବ ଗୌରବକୁ ଯେ ଫେରାଇ ଆଣିବାରେ ସକ୍ଷମ ହେବ, ଏଥିରେ ସନ୍ଦେହ ନାହିଁ ।

ନଭେମ୍ବର ୨୦ ତାରିଖ ଦିନ ପ୍ରଗତି ମଇଦାନର ଲାଲ୍‌ଚୌକଠାରେ ଏକ ବର୍ଣ୍ଣାଢ୍ୟ ପରିବେଶରେ ଓଡ଼ିଶା ଦିବସ ଉତ୍ସବ ମହାସମାରୋହରେ ପାଳିତ ହୋଇଥିଲା । ଅନ୍ୟ ରାଜ୍ୟ ତୁଳନାରେ ଓଡ଼ିଶା ଦିବସ ଉତ୍ସବରେ ଲାଲ୍‌ଚୌକର ଦର୍ଶକ ଗ୍ୟାଲେରୀ ଭରପୂର ହୋଇ ଯାଇଥିଲା ଦେଶ ବିଦେଶର ଦର୍ଶକମାନଙ୍କ ସମାବେଶରେ । ଏହି ଉତ୍ସବରେ ରାଜ୍ୟ ଶିଳ୍ପ ମନ୍ତ୍ରୀ ଶ୍ରୀ ଦିଲ୍ଲୀପ ରାୟ ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ଉତ୍କଳୀୟ କଳା, ସଂସ୍କୃତି ଓ ନୌ-ବାଣିଜ୍ୟ ପରମ୍ପରା ଉପରେ ସଂକ୍ଷିପ୍ତ ଭାଷଣ ପ୍ରଦାନ କରିଥିଲେ । ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗର ଶାସନ ସଚିବ ଶ୍ରୀ ଭାସ୍କର ଚାଟାର୍ଜୀ ତଥା ନିର୍ଦ୍ଦେଶକ ଶ୍ରୀ ସୁରସେନ ଜେନାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ମଣ୍ଡପ ଓ ଉତ୍ସବର ପ୍ରତ୍ୟେକ କାର୍ଯ୍ୟସୂଚୀ ସୁପରିଶୃଙ୍ଖଳିତ ହୋଇଥିଲା । ବିଭାଗର ବହୁ ପଦସ୍ଥ ଅଫିସର, କର୍ମଚାରୀ ଓଡ଼ିଶା ମଣ୍ଡପର ବିଭିନ୍ନ କାର୍ଯ୍ୟକ୍ରମକୁ ସଫଳ କରାଇବାକୁ ସହଯୋଗ କରିଥିଲେ । ଓଡ଼ିଶା ଦିବସ ଉତ୍ସବରେ ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟ ଇତ୍ୟାଦିର ସଂଯୋଜନା କରାଯାଇଥିଲା । ବିଶିଷ୍ଟ କଣ୍ଠଶିଳ୍ପୀ ଶ୍ରୀ ପ୍ରଣବ ପଟ୍ଟନାୟକଙ୍କ କଣ୍ଠରେ କବି ସତୀଶ ପାଢ଼ୀଙ୍କ ଭଜନ, ଶ୍ରୀମତୀ ମାଧବୀ ମୁଦ୍‌ଗଲ ଏବଂ ସାଥୀଙ୍କ ଦ୍ୱାରା ଓଡ଼ିଶୀ ନୃତ୍ୟ ପରିବେଷଣ, ସମ୍ବଲପୁରୀ ନୃତ୍ୟ ପରିବେଷଣ ଇତ୍ୟାଦି ସମବେତ ଅତିଥି ଓ ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖିଥିଲା । ହଜାର ହଜାର ଦର୍ଶକଙ୍କ କରତାଳି ଏବଂ ଉଚ୍ଛ୍ୱସିତ ପ୍ରଶଂସାର ଧ୍ୱନିରେ ଓଡ଼ିଶା ଦିବସ ଉତ୍ସବର ପରିବେଶ ପ୍ରକମ୍ପିତ ହୋଇ ଉଠିଥିଲା ।



---

ସହ-ସମ୍ପାଦକ, 'ଉତ୍କଳ ପ୍ରସଙ୍ଗ',
ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର ।

# ଓଡ଼ିଆ ଯାତ୍ରା ସାହିତ୍ୟର କ୍ରମବିକାଶ

ଶ୍ରୀ ନନ୍ଦକିଶୋର ମହାପାତ୍ର

ଯାତ୍ରା, ନାଟକ, ସାହିତ୍ୟ ଭାରାକ୍ରାନ୍ତ ଜୀବନରେ ମନୁଷ୍ୟକୁ ଆଶ୍ୱସ୍ତି ପ୍ରଦାନ କରେ। ଜୀବନକୁ ସରସତା ଭିତରକୁ ଆଣିବା ପାଇଁ ବହୁକାଳ ପୂର୍ବରୁ ଯାତ୍ରା ନାଟକର ସୃଷ୍ଟି।' ପୂର୍ବରୁ କବି ଲେଖକମାନେ ଜନମାନସକୁ ଆକୃଷ୍ଟ କଲାପରି ସେମାନଙ୍କର ଲେଖାଗୁଡ଼ିକ ଭାବତରଙ୍ଗୀ ପ୍ରଦର୍ଶନ ମାଧ୍ୟମରେ ଜନତାଙ୍କ ମନକୁ ସେହି ସମୟପାଇଁ ସମସ୍ତ ଦୁଃଖ ଜଞ୍ଜାଳ ମଧ୍ୟରୁ ଦୂରେଇ ରଖିବାପାଇଁ ଉଦ୍ୟମ କରିଥାଉଥିଲେ। ଦେବତାମାନଙ୍କର ପୂଜା, ପର୍ବ ପର୍ବାଣୀଗୁଡ଼ିକ ଯାତ୍ରାର ପରିବୃଦ୍ଧି ସହିତ ବହୁମାତ୍ରାରେ ଜଡ଼ିତ। ଦେବତାମାନଙ୍କ ଦେବାଳୟରେ ବା ତୀର୍ଥ ଯାତ୍ରୀମାନଙ୍କ ପଦଯାତ୍ରାର କଷ୍ଟ ଉପଶମ ପାଇଁ ଆନନ୍ଦରେ ନାଚ କରିବାରେ ଏକ ପରମ୍ପରା ବହୁଯୁଗରୁ ସୃଷ୍ଟି ହୋଇଛି। ବିଭିନ୍ନ ସମୟରେ ବିଭିନ୍ନ ଲେଖକ, ନାଟ୍ୟକାର ସମୟର ଆବଶ୍ୟକତା ଓ ଲୋକମାନଙ୍କର ଶୈଳୀ ଚଳନକୁ ରୂପଦେଇ ତାଙ୍କର ନାଟ୍ୟ ରଚନାର ପରିବେଷଣ କରନ୍ତି। ଯାତ୍ରା ହେଉଛି ସାହିତ୍ୟ ସଂସ୍କୃତି ଓ ପରମ୍ପରାର ଏକ ଜ୍ୱଳନ୍ତ ପ୍ରତୀକ। ଏହି ଯାତ୍ରାର ସୃଷ୍ଟି କେବଳ ଓଡ଼ିଶାରେ ନାହିଁ ଏହା ସମଗ୍ର ବିଶ୍ୱର ଏକ ପ୍ରାଚୀନ ପରମ୍ପରା। ଲୋକମାନଙ୍କର ବୋଧଗମ୍ୟ ହେଲାପରି ନାଟକର ବିଷୟବସ୍ତୁଗୁଡ଼ିକ ରଚନା କରିବାରେ ନାଟ୍ୟ କାରର କୃତିତ୍ୱ ପ୍ରକାଶ ପାଏ। ଯାତ୍ରାର କ୍ରମ ବିକାଶ ପ୍ରତି ଦୃଷ୍ଟି ଦେଲେ ଦେଖାଯାଏ ଏହାର ବିଷୟ ବସ୍ତୁ କ୍ରମେ ପୌରାଣିକରୁ ଐତିହାସିକ ଓ ଐତିହାସିକରୁ ସାମାଜିକ ହୋଇପାରିଛି।

ଓଡ଼ିଆ ଯାତ୍ରା ସାହିତ୍ୟର ଏକ ସୁଦୀର୍ଘ ପରମ୍ପରା ରହିଛି। ଓଡ଼ିଶାର ପ୍ରାଚୀନ ଯାତ୍ରା ସାହିତ୍ୟରେ ରାମଲୀଳା, ମହାଭାରତ, କୃଷ୍ଣଲୀଳା, ଦଣ୍ଡନାଚ, ପାଲକାର, ସାମ୍ବ ଯାତ୍ରା ପ୍ରଭୃତି ପ୍ରାଚୀନ ଓଡ଼ିଆ ଯାତ୍ରା ସାହିତ୍ୟର ଭିତ୍ତି ବହନ କରି ଆସିଛି। ଏତଦ୍ ବ୍ୟତୀତ ଓଡ଼ିଶୀ, ସମ୍ବଲପୁରୀ, ଛଉନୃତ୍ୟ ପ୍ରଭୃତି ପରବର୍ତ୍ତୀ ଅବସ୍ଥାରେ ନାଟ୍ୟ ଜଗତରେ ଅଭିନବ ଚମକ ସୃଷ୍ଟି କରିପାରିଛି। କଂସରେ ଶାସନ ପ୍ରବୃତ୍ତିକର ମଧ୍ୟ ଗତିପଥକୁ ପରମ୍ପରା ରହିଛି। ଆଧୁନିକ କାଳରେ ଓଡ଼ିଶାର ଯାତ୍ରା, ନାଟକର ଧାରା ପ୍ରାଚୀନତାରୁ ଆଧୁନିକ ପରିବେଶ ମଧ୍ୟକୁ ପ୍ରବେଶ କରି ଏକ ନୂତନ ସ୍ୱାଦ ଓ ଶୈଳୀର ପରିବେଷଣ ପାଇଁ ଚେଷ୍ଟା ଆରମ୍ଭ ହୋଇଥିଲା। ତାହା ଆଧୁନିକ ପରମ୍ପରା ପାଇଁ ଚେଷ୍ଟା ଆରମ୍ଭ ହୋଇଥିଲା। ସମାଜକୁ ଲକ୍ଷ୍ୟକରି ନୂତନ ରୂପରେ ରୂପାୟିତ କରିବାରେ ଉଦ୍ୟମ ହୋଇଥିଲେହେଁ ତାହା ପ୍ରାଚୀନ ଯୁଗର ଯାତ୍ରା, ନାଟକ ଶୈଳୀ ଓ ସ୍ୱାଦକୁ ଜନମାନସରୁ ଦୂରେଇ ପାରିନଥିଲା। ଏହି ପରିବର୍ତ୍ତନର ଧାରା ଅବ୍ୟାହତ ଥିବା ସମୟରେ ଓଡ଼ିଆ ଯାତ୍ରା ସାହିତ୍ୟରେ ସ୍ୱର୍ଗତ ବୈଷ୍ଣବ ପାଣିଙ୍କ ଆବିର୍ଭାବ ନାଟ୍ୟ ଜଗତରେ ଏକ ନୂତନ ଚମକ ସୃଷ୍ଟି କରିବା ସହିତ ଲୋକମାନଙ୍କ ଦୃଷ୍ଟି ଭଙ୍ଗୀ ଏକ ନୂତନ ଧାରାରେ ପ୍ରବାହିତ ହୋଇଥିଲା। ସମସ୍ତ ଆସିଲା ସମସ୍ତଙ୍କର ଦୃଷ୍ଟି ଏହି ବୈଷ୍ଣବ ପାଣିଙ୍କ ନାଟ୍ୟ ରଚନା ଉପରେ ପଡ଼ିଲା। ପ୍ରାଚୀନ ଓ ଆଧୁନିକତାର ସମନ୍ୱୟରେ ସୃଷ୍ଟି କରିଥିଲେ ସେ ଓଡ଼ିଆରେ ଅଭିନବ ଗୀତିନାଟ୍ୟ। ଅନ୍ୟମାନଙ୍କ ମଧ୍ୟରେ ସେତେବେଳର ଲେଖକ ନାଟ୍ୟକାର ମୋହନ ଗୋସ୍ୱାମୀ, ବାବାଜୀ ବୈଷ୍ଣବ ଚରଣ ଦାସ, ଗୋପାଳ ଦାସ ବାଳକୃଷ୍ଣ ମହାନ୍ତି ପ୍ରମୁଖ ତାଙ୍କର ନାଟ୍ୟ ମାଧ୍ୟମରେ ଗୀତକୁ ପ୍ରାଧାନ୍ୟ ଦେଇ ନାଟକ ରଚନା କରୁଥିଲେ। କିନ୍ତୁ ସ୍ୱର୍ଗତ ବୈଷ୍ଣବ ପାଣି ଜନତାକୁ ଅଧିକ ଆନନ୍ଦ ଦେଲାପରି ଯାତ୍ରାର ମୌଳିକତାକୁ ଭିନ୍ନ ରୂପରେ ଭାଷା ଦେଇ, ଭାବରଙ୍ଗୀର ବାସ୍ତବତା ଉପରେ ସଂଳାପ ଯୋଗିଥିଲେ। ସେ ଅନେକଗୁଡ଼ିଏ ଗୀତାଭିନୟ ଲେଖି ପ୍ରସ୍ତୁତ କଲେ ଯାହାକି ପ୍ରାଚୀନ ଓ ଆଧୁନିକ ପରମ୍ପରାକୁ ସମନ୍ୱିତ କରି ଏକ ଅଭିନବ କଳା ସୃଷ୍ଟିକଲା। ପୋଷାକ ପତ୍ର, ବାଦ୍ୟଯନ୍ତ୍ର ଓ ବଚନିକାରେ ତାଙ୍କର ନିଜସ୍ୱ ଦୃଷ୍ଟିଭଙ୍ଗୀ ରଖି ନିଜର ପଲ୍ଲୀ ଜୀବନ ଓ ଲୋକ ସଂସ୍କୃତିକୁ ଆଧାର କରି ସେ ଗୀତିନାଟ୍ୟ ସୃଷ୍ଟିକଲେ ଯାହାକି ଚିର ଜୀବନ୍ତ ଓ ଅମର ପରମ୍ପରାକୁ ବଜାୟ ରଖି ଜନମାନସକୁ ଦୋହଲି କରିପାରିଛି। ନାଟକରେ ବ୍ୟବହୃତ ଭାଷା ଓ ନାଟ୍ୟ ଭାବଭଙ୍ଗୀ ତାଙ୍କର ଓଡ଼ିଆ ସାହିତ୍ୟକୁ ସମୃଦ୍ଧ ଓ ଲୋକାଭିମୁଖୀ କରିବାରେ ଏକ ମାଇଲ ଖୁଣ୍ଟ ସଦୃଶ। ନିପଟ ମାଟିଆ ଭାଷା ଓ ଢଙ୍ଗରେ ସେ ତାଙ୍କର ଲେଖନୀ ଆରମ୍ଭ କରି ସେଥିରେ ରସିଦେଇଛି ସକଳ ପ୍ରକାର ରସ। ବୀର, କାରୁଣ୍ୟ, ହାସ୍ୟ, ଦାରୁଣ ବିଭତ୍ସ ଆଦି ରସ ସମନ୍ୱୟରେ ସେ ସୃଷ୍ଟି କରନ୍ତି ତାଙ୍କର ଲେଖନୀ ମାଧ୍ୟମରେ ଗୀତିନାଟ୍ୟ। ଗାଁ ଗୋହିରୀ ଠାରୁ ସହରର ଅଟ୍ଟାଳିକାର ଚିତ୍ର। ନାଟ୍ୟ ମାଧ୍ୟମରେ ସେ ଜନମାନସକୁ ନେଇ ଆସନ୍ତି ସହର ଓ ମଫସଲର ଉତ୍କଣ୍ଠା ମଧ୍ୟକୁ।

ତତ୍କାଳୀନ ବ୍ରିଟିଶ ସରକାର ଓ ତାଙ୍କର ଅନୁଚରମାନଙ୍କୁ ନିର୍ଦ୍ଦିଷ୍ଟ ସମୟରେ ସମାଲୋଚନା କରି ଦେଶ ପ୍ରେମର ଭାବନାକୁ ଜନସାଧାରଣଙ୍କ ମଧ୍ୟରେ ଉଦ୍‌ବୋଧିତ କରିବା ଥିଲା ତାଙ୍କର ଅନ୍ୟତମ ଲକ୍ଷ୍ୟ। କୌଣସି ଧମକ ବା ତାଡ଼ନା ତାଙ୍କର ସୃଷ୍ଟି ଶୈଳୀରୁ ତାଙ୍କୁ କେବେ ଦୂରେଇ ପାରିନଥିଲା। ସମାଜରୁ ବୈଷମ୍ୟ ଦୂରୀକରଣ, ଦୁର୍ନୀତି ଓ ଜାତି ପ୍ରଥା ବିରୁଦ୍ଧରେ ସେ

ରଚନା କରୁଥିଲେ ସମୟୋପଯୋଗୀ ଆବୃତ୍ତିମାନ । ଯାତ୍ରା ଜଗତରେ ନୂତନ ଭାବଧାରା ଓ ଆଧୁନିକତାର ଝଲକ ସୃଷ୍ଟି କରିବାଥିଲା ତାଙ୍କ ଲେଖାର ଏକ ଅଭିନବ ଶୈଳୀ । ଓଡ଼ିଶାର ଯାତ୍ରା ସାହିତ୍ୟକୁ ଅଧିକ ଲୋକାଭିମୁଖୀ କରିବାର ଲକ୍ଷ୍ୟ ନେଇ ଗ୍ରାମ ଜୀବନର ନାଟ୍ୟ ସଂସ୍କୃତିକୁ ଆଧୁନିକ ରୁଚିମାର୍ଗରେ ବିକଶିତ କରିବାଥିଲା ତାଙ୍କ ଲେଖନୀର ଅନ୍ୟତମ ମାର୍ଗ । ଯେତେବେଳେ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରରେ ହରିଜନମାନଙ୍କର ପ୍ରବେଶ ହେଲା ସେତେବେଳେ କବି ଅତି ଆନନ୍ଦ ବିଗଳିତ ହୋଇ ଲେଖିଥିଲେ–

ନୀଳ ଶଇଳ ଦେଉଳ ସାମନ୍ତରେ ଶଙ୍ଖ କଟକର ରାଜା
ଏତେବେଳେ ସାର୍ଥ ହେଲା ଉଡ଼ିବାର ପତିତ ତାରଣ ଧ୍ୱଜା
ମହାପ୍ରଭୁ ହେ

ହରି ହରିଜନଙ୍କର ବନ୍ଧୁଭାବ ଜଣାଗଲା ଏତେ କାଳେ
କଲେ ଦରଶନ ରୋଚେ ନରଶ୍ରେଣୀ ରତ୍ନ ସିଂହାସନ ତଳେ
ମହାପ୍ରଭୁ ହେ

କବିଙ୍କ ଲେଖନୀର ଅନ୍ୟଏକ ଦିଗଥିଲା ଯେଉଁଥିପାଇଁ ସେ ଦାସତ୍ୱ ବା ଚାକିରି ପ୍ରତି ଘୃଣା ଭାବ ପ୍ରକାଶ କରିଆସୁଥିଲେ । ସେ ସେତେବେଳେ ଦାସତ୍ୱ ଓ ଚାକିରି ମନୋବୃତ୍ତିକୁ ଲକ୍ଷ୍ୟ କରି ତାଙ୍କ ରଚନାରେ ଲେଖିଥିଲେ–

ପୋଡ଼ି ଯାଉରେ ପୋଡ଼ା ଚାକିରି ନିଶା
ପର ଅଇଁଠାକୁ ପର ଗୋଇଠାକୁ
କେଉଁ ସୁଖପାଇଁ ବଳାଅ ଆଶା

ପୁନଶ୍ଚ ଲୋକମାନଙ୍କୁ ଆତ୍ମନିର୍ଭରଶୀଳ କରିବା ଲକ୍ଷ୍ୟ ନେଇ କବି ଲେଖିଥିଲେ–

ନିଜ ଗିହେ ଭାଇ ନିଜେ ମାଟି ଖୋଳ
ପେଟ ପୋଷୁଥାନ୍ତି ପିମ୍ପୁଡ଼ି ମୂଷା
ତାଙ୍କଠାରୁ ହୀନ ତୁମର ଜୀବନ
କିଏ ଦିଏ ତାଙ୍କୁ ଟଙ୍କା ପଇସା
ନିଜ ହାତେ ଭାଇ ନିଜେ କାମକର
ନିଜ ଘର ନିଜେ କରିଣ ବସା

କବିଙ୍କର ଜଗନ୍ନାଥ ଧର୍ମପ୍ରତି ପ୍ରଗାଢ଼ ମୋହଥିଲା । ଜଗନ୍ନାଥ ଧର୍ମର ମୌଳିକତାକୁ ବାସ୍ତବ ରୂପ ଦେବାଥିଲା ତାଙ୍କର ଅନ୍ୟତମ ଉଦ୍ୟମ । କବି ସ୍ୱର୍ଗତ ପାଣିଙ୍କ ରଚନା ଶୈଳୀର ବିଶେଷତ୍ୱଟି ବିଭିନ୍ନ ଓ ବହୁମୁଖୀ । ସେ ସମସ୍ତ ମଧ୍ୟରେ ପୌରାଣିକ ରଚନା ଅତ୍ୟଧିକ । ଗ୍ରାମାଞ୍ଚଳର ଲୋକମାନଙ୍କୁ ବହୁଳ ଭାବରେ ପ୍ରଭାବିତ କଲାପରି ସେ ରଚନା କରିଥିଲେ ରାବଣ ବଧ, କଂସ ବଧ, କର୍ଣ୍ଣ ବଧ, ବ୍ରଜଲୀଳା, ହରିଶ୍ଚନ୍ଦ୍ର, ଯଦୁବଂଶ ଧ୍ୱଂସ ପ୍ରଭୃତି । ଏତଦ୍ ବ୍ୟତୀତ ତାଙ୍କର ଐତିହାସିକ ଓ କିମ୍ବଦନ୍ତୀ ମୂଳକ ରଚନା ହେଉଛି କଳାପାହାଡ଼, କାଳିଦାସ, ମୀରାବାଈ, କେଦାର ଗୌରୀ, ସଂଯୁକ୍ତା ପରିଣୟ, ଚନ୍ଦ୍ରଗୁପ୍ତ ଓ ସାକ୍ଷୀଗୋପାଳ ପ୍ରଭୃତି । ସାମାଜିକ ଓ କାଳ୍ପନିକ ରଚନା ମଧ୍ୟରେ ବିଦ୍ୟାସୁନ୍ଦରୀ, କାଞ୍ଚନ କୁମାରୀ, ଶ୍ୱେତବସନ୍ତ, ମଲ୍ଲୀଫୁଲ ପ୍ରଭୃତି । ସ୍ୱର୍ଗତ ପାଣି ବୀର ରସାତ୍ମକ ଓ ବ୍ୟଙ୍ଗ ରସାତ୍ମକ ରଚନାରେ ଅତ୍ୟନ୍ତ ଧୁରୀଣ ।

ସେ ତାଙ୍କର ରଚନାରେ କୈଳାଶପତି ମହାଦେବଙ୍କ ଦୁର୍ବଳତାକୁ ସମାଲୋଚନା କରିବାରେ ପଛାଇନାହାନ୍ତି । ଏହି ମାର୍ଗରେ ଦକ୍ଷ ଯଜ୍ଞ ନାଟକରେ ସେ ଲେଖିଛନ୍ତି–

ଅଟୁ ଜଳ ଜଳା ଝିଟି କପଟି ଲମ୍ପଟି ହଡା ବଢ଼ାଟାରେ
ମଡା ଭୁଇଁ ବୁଲା ଲାଉଥାଳ ଝୁଲା ଥାଉ ଭୁତ ମେଳେ
ଧର୍ମଛଡାଟାରେ ଇତ୍ୟାଦି ।

ଏହାଛଡ଼ା ପ୍ରସିଦ୍ଧ କର୍ଣ୍ଣ ବଧ ଗୀତିନାଟ୍ୟରେ ବୀର ରସାତ୍ମକ ରଚନାରେ ଲେଖିଛନ୍ତି–

କାର୍ମୁକି ଟଙ୍କାର ଅସ୍ତ୍ରର ଝଙ୍କାର ହୁଙ୍କାର ନିର୍ଘୋଷ ଶୁଣି ହେ
ଶବରା ଶଙ୍କର ଡରି ପଳାଇବେ ଅଙ୍ଗରାଟ ହେବ ପାଣି ହେ
ଇତ୍ୟାଦି

କବିତାଙ୍କ ଲେଖନୀରେ ବୀରରସ, ଶୃଙ୍ଗାର ରସ ଓ ବିଭିନ୍ନ ରସର ଚମତ୍କାରିତା ପ୍ରତିପାଦନ କରିଛନ୍ତି । ତାଙ୍କର ରଚନା ମଧ୍ୟରେ ଦ୍ରୋଣାଚାର୍ଯ୍ୟ ବଧ, ଦକ୍ଷ ଯଜ୍ଞ, କାର୍ତ୍ତବୀର୍ଯ୍ୟ ସଂହାର, ଶନି ଲକ୍ଷ୍ମୀ କଳି, ପ୍ରଭାସ ମିଳନ ପ୍ରଭୃତିରେ ଆଧୁନିକତାର ରୂପ ଦେବାରେ ସକ୍ଷମ ହୋଇଛନ୍ତି । ସର୍ବୋପରି କବିଙ୍କର ରସିକତାର ମଧ୍ୟ ପଟାନ୍ତର ନାହିଁ ।

ଓଡ଼ିଶା ହେଉଛି କଳା, ସାହିତ୍ୟ ଓ ସ୍ଥାପତ୍ୟର ମିଳନ ସ୍ଥଳୀ । ସବୁଥିରେ ଉତ୍କର୍ଷ ସାଧନ ଯୋଗୁଁ ଏହାର ନାମ ମଧ୍ୟ ଉଜ୍ଜ୍ୱଳ । ଏହି ପବିତ୍ର କଳା ଭୂମିରେ ଯେଉଁମାନେ ଯାତ୍ରା ସାହିତ୍ୟର ଧାରାରେ ପରିବର୍ତ୍ତନ ଆଣି ଜନତାକୁ ଆକୃଷ୍ଟ ଓ ବାସ୍ତବବାଦୀ କରିବାରେ ସଂସ୍କାର ମୂଳକ ପଦକ୍ଷେପ ନେଇଥିଲେ ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ ସ୍ୱର୍ଗତ ପାଣି । କଟକ ଜିଲ୍ଲାର ମାହାଙ୍ଗା ଥାନା ଅନ୍ତର୍ଗତ କୋଠପଦା ପଲ୍ଲୀ ଅଞ୍ଚଳର ଏକ ବ୍ରାହ୍ମଣ ପରିବାରରେ ଜନ୍ମ ନେଇଥିବା ଏହି କବି ବାଲ୍ୟାବସ୍ଥାରୁ ଦାରିଦ୍ର୍ୟର ତାଡ଼ନା ଓ ବହୁ ଯନ୍ତ୍ରଣା ମଧ୍ୟରେ ତାଙ୍କର ମହତ୍ତ୍ୱ ଯେ ବିସ୍ତାରିତ କରିପାରିଥିଲେ ଏହାହିଁ ତାଙ୍କ ଭଗବତ୍ ଆଶୀର୍ବାଦର ଏକ ଝଲକ । ଅଳ୍ପ ବୟସରେ ତାଙ୍କର କର୍ମମୟ ଜୀବନ ଏକ ଗୋଷେଇଆ ବୃତ୍ତିରୁ ଆରମ୍ଭ କରି ପରବର୍ତ୍ତୀ ଅବସ୍ଥାରେ କୋଠପଦା ମହନ୍ତଙ୍କ ପରିଚାଳନାଧୀନ ଯାତ୍ରା ଦଳରେ ଯୋଗଦେଇ ତାଙ୍କର ପ୍ରତିଭା ବଳରେ ଓଡ଼ିଆ ଯାତ୍ରା ସାହିତ୍ୟରେ ନୂତନତ୍ୱ ସୃଷ୍ଟିକରି ଦିଗଦ୍ରଷ୍ଟା ହୋଇଥିଲେ । ସମୟ କ୍ରମେ ସେ ସେତେବେଳର ଅଗ୍ରଣୀ ଶ୍ରୀକୃଷ୍ଣ ଦମ୍ଭଙ୍କ ଯାତ୍ରାଦଳ ସହିତ ପ୍ରତିଯୋଗିତାରେ ସିଦ୍ଧିଲାଭ କରି ଜନତାଙ୍କ ହୃଦୟରେ ଗଣକବି ଭାବରେ ସ୍ଥାନ ପାଆନ୍ତି । ପବିତ୍ର କୁମାର ପୂର୍ଣ୍ଣିମୀ ତିଥିରେ ଜନ୍ମଲାଭ କରି ସେ ପୂର୍ଣ୍ଣିମାର ଚନ୍ଦ୍ର ପରି ଓଡ଼ିଆ ନାଟ୍ୟ ଜଗତକୁ ଆଲୋକିତ କରନ୍ତି । ସେ ପ୍ରାୟ ୨୦୦ରୁ ଊର୍ଦ୍ଧ୍ୱ ସୁଖାନ୍ତ ଗୀତିନାଟ୍ୟ ପ୍ରହସନ ପ୍ରଭୃତି ରଚନା କରି ଅନ୍ୟଯାତ୍ରା ଦଳକୁ ତାଲିମ ଦେଇ ତାଙ୍କର ନାମକୁ ଯଥାର୍ଥରେ ଗଣ କବି ଆଖ୍ୟା ଦେବାର ଗୌରବ ଅର୍ଜନ କରିପାରିଥିଲେ ।

ଆଜି ଓଡ଼ିଶା କାହିଁକି ସାରା ଭାରତ ବର୍ଷରେ ମଧ୍ୟ ଓଡ଼ିଆ ଗୀତିନାଟ୍ୟ ଜନଗଣଙ୍କ ହୃଦୟର ଆବେଦନକୁ ସ୍ପର୍ଶ କରି ପାରିଛି । ଏହାର ବାଦ୍ୟଯନ୍ତ୍ରର ଝଙ୍କାର ଦର୍ଶକ ମନରେ ଶିହରଣ ଓ ପ୍ରକମ୍ପନ ସୃଷ୍ଟି କରିପାରିଛି । ସହର ଓ ପୁରପଲ୍ଲୀରେ ଏହି

ଗୀତିନାଟ୍ୟ ବନ୍ଧୁ ପ୍ରଶଂସିତ ହୋଇପାରିବା ସହିତ ତାଙ୍କ ସୃଷ୍ଟି କରିପାରିଛି । ଏହା ଜୀବନ୍ତ ଓ ଚିରନ୍ତନ । ଏହି ରଚନା ବଳୀର ଅନୁବାଦ ଓ ପ୍ରଦର୍ଶନ ଦେଶ ବିଦେଶରେ ପ୍ରସାରିତ ହୋଇପାରିଲେ ଏହା ଆହୁରି ବ୍ୟାପକ ଓ ମର୍ମସ୍ପର୍ଶୀ ହୋଇପାରିବ ଯେହେତୁ ଏହା ସାହିତ୍ୟର ସବୁ ରସ ଓ ଦୃଷ୍ଟିଭଙ୍ଗୀର ସମନ୍ୱୟରେ ରଚିତ ଓ ପ୍ରଦର୍ଶିତ ।

ଶେଷ ଜୀବନରେ କବି ପଥଭ୍ରଷ୍ଟ ହୋଇ ଅନେକ ସମାଲୋଚନାର ପାତ୍ର ହେଲେ ମଧ୍ୟ ସେ ତାଙ୍କର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କ ପାଖରେ ଶୋଗଣସ୍ୟାରେ ଥାଇ ପ୍ରାର୍ଥନା କରିଛନ୍ତି–

ହେଲା କରନା ହେ ନୀଳାଚଳ ନାଥ ଆଉ
ବଳାଇଲା ଦୁଃଖ କଳାକାର ସୁଖ ତୋପରି ଶୁଳବ ଥାଉ
ମିଳାଇଲା ଦେହ ତଳେ ଲୁଣପରି ପଳାଇ ଯିବ ଏ ଜୀବ
ବଳା ଚକ୍ରି କଲେ ଲୀଳା ବିନୋଦିଆ କେ ବିମା
ତୋତେ ଭଜିବ

ଓଡ଼ିଆ ଯାତ୍ରା ସାହିତ୍ୟ ତଥା ବିକାଶରେ ସୁଦୃଢ଼ ସ୍ଥାନ କରିଥିବା ଗଣକବି (Poet of the mass) ଓଡ଼ିଆ ଯାତ୍ରା ସାହିତ୍ୟର ଗର୍ବ ଓ ଗୌରବ । ସେହି ପ୍ରତିଭାକୁ ସିମୀତ ନରଖି ସମଗ୍ର ବିଶ୍ୱରେ ବିସ୍ତାରିତ କରିପାରିଲେ ଓଡ଼ିଆ ଜାତିର ତେବେ ସାରା ବିଶ୍ୱରେ ବିକଶିତ ହେବ । ଏହାହିଁ ହେବ ତାଙ୍କ ପ୍ରତିଭାର ପ୍ରକୃତ ମୂଲ୍ୟାୟନ ।

---

ଟ୍ରିଟ୍ କଲୋନୀ, ନୂଆପଲ୍ଲୀ,
ଭୁବନେଶ୍ୱର-୧୨ ।



ପୁରୀଠାରେ ଶ୍ରୀକ୍ଷେତ୍ର କଳା ପରିଷଦ ଆନୁକୂଲ୍ୟରେ ଆୟୋଜିତ ଭଜନ ସମାରୋହରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀ ବାଳକ ଦୀପକ ପଟ୍ଟନାୟକଙ୍କୁ 'ପାରଙ୍ଗ ପ୍ରତିଭା' ପୁରସ୍କାର ପ୍ରଦାନ କରୁଛନ୍ତି ।

ସଫଳତାର ସହିତ ସ୍ଥାନିତ ହୋଇଛି । ବଳରାମ ଦାସଙ୍କ 'ବଉଳା ଅଧ୍ୟାୟ' ଓ ସଂସ୍କୃତ ଗ୍ରନ୍ଥ 'ଇତିହାସ ସମୁଚ୍ଚୟ'ର 'ବହୁଳା ବ୍ୟାଘ୍ର ସମ୍ବାଦ' କବିଙ୍କର ପ୍ରେରଣା ବୋଲି ମନେ ହୁଏ । ମାତ୍ର ବଉଳା ଚରିତର ଅଙ୍ଗ ବିନ୍ୟାସରେ ବଳରାମ ଦାସଙ୍କଠାରୁ ପାଟବତା ପ୍ରଦର୍ଶନ କରିଛନ୍ତି । ବଳରାମଙ୍କ ବାଘର ନାମ 'ନିପୁଥା' ହୋଇଥିବା ବେଳେ ଗୋବିନ୍ଦ ଭଞ୍ଜ ବଉଳା ଚରିତର ବାଘକୁ କାମରୂପୀ ବୋଲି ପ୍ରକାଶ କରି ପ୍ରସଙ୍ଗକୁ ଅଧିକ ପ୍ରତୀକାତ୍ମକ କରିଛନ୍ତି । ଏହାଛଡ଼ା ବଳରାମଙ୍କ ବାଘ ଐଶୀ ଶକ୍ତିରେ ପ୍ରଭାବିତ ହୋଇଥିବା ବେଳେ ଗୋବିନ୍ଦଙ୍କ କାମରୂପୀ ବାଘ ପରାହତ ହୋଇଛି ବଉଳାର ସତ୍ୟନିଷ୍ଠ ନିକଟରେ । ବଉଳାର ସତ୍ୟନିଷ୍ଠାରେ ଅଭିଭୂତ ବ୍ୟାଘ୍ର ଅନୁତାପରେ ଜର୍ଜରିତ ହୋଇ ପ୍ରକାଶ କରିଛି :

ଆଜିଠାରୁ ଧର୍ମକର୍ମ ନିଶ୍ଚୟ କରିବି/ଅଚିରେ ଯେତେକ ପାପ ନିଶ୍ଚୟ ଦହିବି ।
ନାନା ତୀର୍ଥମାନଙ୍କୁ ମୁଁ ଗମନ କରିବି/ ପାପମାନ ନାଶି କାୟ ଶୋଧନ କରିବି ।
ପର୍ବତ ଉପରୁ ପଡ଼ି ଦେଇବି ଜୀବନ/ନୋହିଲେ ମୁଁ ପ୍ରବେଶ ହୋଇବି ହୁତାଶନ ।

ଏହାଛଡ଼ା କବିଙ୍କ ଭକ୍ତ ବିନୋଦ ଓ ଶ୍ରୀଚରଣ ସୁଧାନିଧି କାବ୍ୟ ଦ୍ୱୟରୁ କବିଙ୍କର ଭକ୍ତି ପ୍ରାଣତାର ପରିଚୟ ମିଳିଥାଏ ।

ଗୋବିନ୍ଦଙ୍କ ସାରସ୍ୱତ ପ୍ରତିଭାର ଉତ୍ତର ଦାୟାଦ ରୂପେ ଆସ ପ୍ରକାଶ କରନ୍ତି କବି ଲକ୍ଷ୍ମୀନାରାୟଣ ଭଞ୍ଜ, ତାଙ୍କ ପୁତ୍ର କବି ଜନାର୍ଦ୍ଦନ ଭଞ୍ଜ । ଗୋବିନ୍ଦଙ୍କ ପରି ସପ୍ତଦଶ ଶତକର ଏହି କବି ଦ୍ୱୟ ମଧ୍ୟ ଥିଲେ ଭକ୍ତ କବି । ଅଷ୍ଟାଦଶ ଶତକର ରାଜକବି ଗୋପୀନାଥ ଭଞ୍ଜ ଓ ତାଙ୍କ ପୁତ୍ର ନୃସିଂହ ନାରାୟଣ ଭଞ୍ଜଙ୍କ ସାହିତ୍ୟ ମଧ୍ୟ ରୀତି ଯୁଗୀୟ ଆଦିରସାନୁରକ୍ତି ଓ କୃଷ୍ଣଗତ ପ୍ରାଣତା ପ୍ରକାଶରେ ବିଚ୍ୟୁତ ହୋଇନାହିଁ ।

ଅଷ୍ଟାଦଶ ଶତକର ସାହିତ୍ୟାକାଶରେ ଅତ୍ୟନ୍ତ ଉଜ୍ଜ୍ୱଳ ନକ୍ଷତ୍ର ପରି ପ୍ରତିଭାତ ହୁଅନ୍ତି କବି ପ୍ରତାପ ବଳଭଦ୍ର ଭଞ୍ଜ । 'ଅ' ଆଦ୍ୟାନୁପ୍ରାସରେ ରଚିତ ପ୍ରତାପ ବଳଭଦ୍ର ଭଞ୍ଜଙ୍କ ଅମ୍ବିକା ବିଳାସ କବିଙ୍କର ଏକ ଅମ୍ଳାନ କୀର୍ତ୍ତି । ଶିବ–ପାର୍ବତୀଙ୍କ ବିବାହ ପ୍ରସଙ୍ଗକୁ ନେଇ ରଚିତ ଏହି କାବ୍ୟଟି ରୀତି ଯୁଗୀୟ କାବ୍ୟ ପରମ୍ପରାର ଏକ ବଳିଷ୍ଠ ସଂଯୋଜନ । କବି କାବ୍ୟ ଭିତରେ ନିଜର କବିତ୍ୱର ପରାକାଷ୍ଠା ପ୍ରଦର୍ଶନରେ ଆଦୌ ଅସମର୍ଥ ହୋଇନାହାନ୍ତି । କେନ୍ଦୁଝରରେ ଶୈବ ଧର୍ମର ସ୍ୱଚ୍ଛ ଗତିଶୀଳତା ଲକ୍ଷଣୀୟ । ବୈତରଣୀର ଉପତ୍ୟକାଠାରୁ କ୍ଷେତ୍ର ଅନ୍ତରରେ ଶିବ ଲିଙ୍ଗର ଉପସ୍ଥିତି ଏ ମାଟିରେ ଶୈବ ଧର୍ମର ପ୍ରାଚୀନତାର ସ୍ପଷ୍ଟ ଆଲେଖ୍ୟ ଅଙ୍କନ କରୁଛି । ତେଣୁ କାଳିଦାସଙ୍କ କୁମାର ସମ୍ଭବ ଓ ଶିବ ପୁରାଣ ଅନୁସରଣରେ ପ୍ରତାପ ବଳଭଦ୍ରଙ୍କ ଅମ୍ବିକା ବିଳାସ କାବ୍ୟ ରଚିତ । ଏହି କାବ୍ୟକୁ ନେଇ ଓଡ଼ିଆ ସାହିତ୍ୟ ବିତର୍କିତ । କେତେକ ତଥାକଥିତ ଗବେଷକ ବ୍ରଜନାଥଙ୍କ ସୁବିପୁଳ ସୃଷ୍ଟିର ସୁଯୋଗ ନେଇ ଅମ୍ବିକା ବିଳାସକୁ ତାଙ୍କର କୃତୀ ଭାବରେ ଚିହ୍ନିତ କରିବାରେ ପ୍ରଚେଷ୍ଟାରତ । କିନ୍ତୁ ଅମ୍ବିକା ବିଳାସର କବି ପ୍ରତାପ ବଳଭଦ୍ର ଓ ବ୍ରଜନାଥଙ୍କ ଧର୍ମ ମତ ମଧ୍ୟରେ ଥିବା ମୌଳିକ ପାର୍ଥକ୍ୟକୁ ଲକ୍ଷ୍ୟ କଲେ ନିରପେକ୍ଷ ଗବେଷକ ପ୍ରତାପ ବଳଭଦ୍ରଙ୍କୁ ଅମ୍ବିକା ବିଳାସର ସ୍ରଷ୍ଟା ବୋଲି ନିଃସନ୍ଦେହରେ ପ୍ରକାଶ କରିବ । ଶ୍ରୀକୃଷ୍ଣ ଓ ଶିବଙ୍କ ମଧ୍ୟରେ ଅଭେଦତାକୁ ପ୍ରକାଶ କରି କବି ଗାଆନ୍ତି :

"ଅୟେ ମୀନକୂର୍ମକୁ କାଳ ନୁହରି ଖର୍ବ ମହୁଜ ପର୍ଶୁରାମ ରାମ ବଳରାମ
ଅନୁକମ୍ପାମୟ ବୁଦ୍ଧ କଳ୍କିଦେବ ଦଶବିଧ ରୂପ ହର କର ପୂର୍ଣ୍ଣକାମ ।
ହେ ଅନ୍ଧକାରୀ ! ଅଶେଷ ସୁଖଦ ଶେଷ ସେବ୍ୟ/ଅବନୀଶ ବଳଭଦ୍ର
ବଳଦେବ ହେ !"

ଏଠାରେ କବି ଶିବଙ୍କୁ ସମସ୍ତ ଅବତାରର ଅବତାରୀ ରୂପେ ପରିକଳ୍ପନା କରି ହରିହର ଏକ ଆତ୍ମା ବୋଲି ପ୍ରକାଶ କରିଛନ୍ତି । ଏହାଛଡ଼ା –

ଅଚ୍ୟୁତ ଶିବ ଏ ଅଭିନ୍ନ/ଅମ୍ବିକା ରାଧିକା ଯେସନ
ଅନ୍ତର ଏଥି କିଛି ନାହିଁ/ଅଜ୍ଞାନୀ ଭେଦକୁ ନପାଇ ।

ବୋଲି ପ୍ରକାଶ କରି ଶିବ–ଶ୍ରୀକୃଷ୍ଣ, ପାର୍ବତୀ ଶ୍ରୀରାଧାଙ୍କ ମଧ୍ୟରେ ଅଭେଦ କଳ୍ପନା କରି ନିଜର ଉଦାର ଧର୍ମ ମତରେ ଆଲେଖ୍ୟ ଅଙ୍କନ କଲାବେଳେ ବ୍ରଜନାଥଙ୍କର ବିପୁଳାୟତନ ସାରସ୍ୱତ ସମ୍ଭାର ମଧ୍ୟରେ କୁତ୍ରାପି ଚିନ୍ତନରେ ଏତାଦୃଶ ମୌଳିକତା ଓ ଉଦାରତା ପ୍ରକାଶ କରି ନାହାନ୍ତି । ଏହାଛଡ଼ା ବଳଭଦ୍ର କେନ୍ଦୁଝରର ରାଷ୍ଟ୍ର ଦେବତା । ଗୋବିନ୍ଦ (ଶ୍ରୀକୃଷ୍ଣ) କେନ୍ଦୁଝରର ପ୍ରାସାଦାଧୀଶ୍ୱର ରୂପେ ସ୍ୱୀକୃତ । ଅମ୍ବିକା ବିଳାସ କାବ୍ୟର ଦକ୍ଷ ଯଜ୍ଞ ଧ୍ୱଂସର ନାୟକ ବୀରଭଦ୍ର ରୂପୀ ଭୀମ ଭୈରବ କାଳାନଳଙ୍କୁ କବି ପ୍ରଦର୍ଶନ କରିଛନ୍ତି ଶ୍ରୀ ବଳଭଦ୍ର ଜୀଉ ମନ୍ଦିରର ପ୍ରତିମାଙ୍କ ମଧ୍ୟରେ । କବି ଶିବଙ୍କ ଭୀମ ଭୈରବ ରୂପର ସ୍ତୁତି କରି ପ୍ରକାଶ କରନ୍ତି :

"ଅହେ ଶ୍ୱେତ ରୂପ ଭୂତ ଚତୁର/ଅସି ତ୍ରାସଶି ମସ୍ତକ ଏଗାର
ଅସ୍ଥି ଶୋଭିଏ ଚିହ୍ନମାନ ବିଶେ/ଅନନ୍ତ ପାଦେ ଯା ଶୋହ ପ୍ରକାଶେ ଅଭିଷ୍ଟା
ମହିମା ଯାର
ଅନ୍ୟର ଗୁଣାତୀତ କୃଷ୍ଣ ସ୍ୱରୂପ ଭଜେ ଭକ୍ତ ନୃପବର ଯେ ।"

ଜୀଉଙ୍କର ସୁନାବେଶ ସମୟରେ ବଳଦେବଙ୍କ ମସ୍ତକରେ ସପ୍ତଫେଣୀ ଅନନ୍ତ ଛତ୍ରାକାରରେ ଅବସ୍ଥାନ କରୁଥିବା ହେତୁ କବିଙ୍କର ଏହା ଠାକୁରଙ୍କର ସୁନା ବେଶ ସମ୍ପର୍କିତ ବନ୍ଦନା ବୋଲି ଅନୁମିତ ହୋଇଥାଏ । ଶ୍ରୀଜୀଉଙ୍କର ପୂଜାର୍ଚ୍ଚନା ସହ ନିବିଡ଼ ଭାବରେ ସମ୍ପୃକ୍ତ ନଥିଲେ ଏ ପ୍ରକାର ବର୍ଣ୍ଣନା ଯେ ସାଧ୍ୟାତୀତ ଏହା ସ୍ୱତଃ ଅନୁମିତ ।

କବି ବ୍ରଜନାଥଙ୍କର ବହୁ ଭାଷାରେ ଦକ୍ଷତା ଥିଲା । ମାତ୍ର ଏହା ବୋଲି ଓଡ଼ିଆ ସାହିତ୍ୟର ଅନ୍ୟ ସାଧକଙ୍କ ପକ୍ଷରେ ବହୁ ପାଠିତା ସାଧ୍ୟାତୀତ ଏ ଧାରଣା ଏକାନ୍ତ ଅବାସ୍ତବ । ପ୍ରତାପ ବଳଭଦ୍ର ଏକ ଦୃଢ଼ ସାରସ୍ୱତ ପରମ୍ପରାର ଉତ୍ତର ଦାୟାଦ । ଏହାଛଡ଼ା ମରହଟ୍ଟାଙ୍କ ସହ ତାଙ୍କର ବନ୍ଧୁତା ଓ ରାଜ ଦରବାରରେ ଶାସକ ବର୍ଗୀୟ ବ୍ରାହ୍ମଣଙ୍କ ଉପସ୍ଥିତି ତାଙ୍କୁ ମରାଠୀ ବା ବଙ୍ଗଳାରେ ଯେ ପ୍ରେରଣା ଯୋଗାଇ ନଥିବ ଏହା ନିର୍ବିବାଦରେ କୁହାଯାଇ ନପାରେ । ଅମ୍ବିକା ବିଳାସ କବିଙ୍କର ଏକମାତ୍ର ସୃଷ୍ଟି ନୁହେଁ । ସେ ମଧ୍ୟ ବହୁ ସରସ ଜଣାଣ ରଚନା କରି ସ୍ୱୀୟ କବିତ୍ୱକୁ ଅଧିକ ମହିମାନ୍ୱିତ କରି ପାରିଛନ୍ତି । ଏହାଛଡ଼ା ସଂସ୍କୃତ ଭାଷାରେ ଲେଖନୀ ସୃଜନା କରି ବିଷ୍ଣୁ ସହସ୍ର ନାମ ଓ ମାଳଶ୍ରିତ ଦେବୀ ସ୍ତୁତି ଆଦି ରଚନା କରିଛନ୍ତି ।

କବି ପ୍ରତାପ ବଳଭଦ୍ରଙ୍କ ସୁପୁତ୍ର ଜନାର୍ଦ୍ଦନ ଭଞ୍ଜ ଉଭୟ ଓଡ଼ିଆ ଓ ସଂସ୍କୃତରେ ଲେଖନୀ ସୃଜନା କରି ନିଜ କବିତ୍ୱ ତଥା ପାଣ୍ଡିତ୍ୟର

ପରିଚୟ ପ୍ରଦାନ କରିଛନ୍ତି । ଲୀଳାଲତା ତାଙ୍କର ଓଡ଼ିଆ ଭାଷାରେ ରଚିତ ଏକ ମନୋଜ୍ଞ କାବ୍ୟ । ଏହାଛଡ଼ା ତାଙ୍କର 'ନୃତ୍ୟାର୍ଣ୍ଣବ' ସଂସ୍କୃତ ଭାଷାରେ ରଚିତ ଅନ୍ୟତମ କୃତୀ । ଏହି ଶତକର ଅନ୍ୟତମ ପ୍ରତିଭାବାନ ରାଜକବି ଗଦାଧର ଭଞ୍ଜଙ୍କ ରସ ମୁକ୍ତାବଳୀ ଏକ ଅନୁପମ କାବ୍ୟକୃତି । ଏତଦ୍ ଭିନ୍ନ ଦିଗପାଳ ପ୍ରବନ୍ଧ ଓ ଅଷ୍ଟାଦଶ ଲହରୀ ତାଙ୍କ କବିତ୍ୱର ଅନ୍ୟତମ ନିଦର୍ଶନ ।

କେନ୍ଦୁଝରର ସାହିତ୍ୟ ଯେ କେବଳ ରାଜନ୍ୟବର୍ଗଙ୍କ ଲେଖନୀ ସୃଜନାରେ ସମୃଦ୍ଧି ଲାଭ କରିଥିଲା ତା ନୁହେଁ, ଊନବିଂଶ ଶତାବ୍ଦୀର ସାଧାରଣ ଜନତାଙ୍କ ମଧ୍ୟରୁ ବହୁ କବି ଲେଖନୀ ସୃଜନା କରିଥିଲେ । ସେମାନଙ୍କ ମଧ୍ୟରେ କଳ୍କୀ ପୁରାଣର ସ୍ରଷ୍ଟା ହଳଧର ମିଶ୍ର ଅନ୍ୟତମ । କବି ବାସୁଦେବ ମିଶ୍ରଙ୍କ ସଂଗ୍ରାମ ଲହରୀ ଓଡ଼ିଆ ସମର ସାହିତ୍ୟରେ ଏକ ବଳିଷ୍ଠ ସଂଯୋଜନ । ସେହିପରି ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଧରଣୀଧର ନାୟକଙ୍କ ନେତୃତ୍ୱରେ ସଙ୍ଗଠିତ ଜନ ଜାଗରଣକୁ ଆଧାର କରି କବି ରସାନନ୍ଦ ନାଏକଙ୍କ ଧରଣୀ ଗୀତି କେନ୍ଦୁଝରର ଗ୍ରାମୀଣ ଜନତାର ହୃଦୟକୁ ଗଭୀର ଭାବେ ଆଲୋଡ଼ିତ କରିଥାଏ । ଏହା ଛଡ଼ା କେନ୍ଦୁଝରର ତତ୍କାଳୀନ ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜ ଦେବ ମଧ୍ୟ ନିଜ କବିତ୍ୱର ପରାକାଷ୍ଠା ପ୍ରଦର୍ଶନରେ ପରାଙ୍ମୁଖ ହୋଇନାହାନ୍ତି ।

କେବଳ କବିଙ୍କ ସୃଷ୍ଟିରେ ଯେ କେନ୍ଦୁଝରର ସାହିତ୍ୟ ସମୃଦ୍ଧ ତା ନୁହେଁ, ନାରୀ କବିଙ୍କ ରଚନାରେ ମଧ୍ୟ ଏହା ଶ୍ରୀମଣ୍ଡୀ ହୋଇ ଉଠିଛି । ଊନବିଂଶ ଶତକର କବୟିତ୍ରୀ ରାଣୀ ବିଷ୍ଣୁପ୍ରିୟାଙ୍କର ମାୟାଶବରୀ ଏ ଦିଗରେ ଏକ ବଳିଷ୍ଠ ନିଦର୍ଶନ । ଓଡ଼ିଆ ସାହିତ୍ୟରେ ଆଧୁନିକତାର ପଦପାତ ସ୍ପଷ୍ଟ ହୋଇ ଆସୁଥିବା ବେଳେ କବୟିତ୍ରୀଙ୍କ ଲଳିତ ପଦବିନ୍ୟାସରେ କେନ୍ଦୁଝର ଭାରତୀଙ୍କ ଅଙ୍ଗନ ନିକ୍ୱଣିତ ହୋଇ ଉଠିଛି । ତାଙ୍କ ଲେଖନୀରେ ଆଧୁନିକତାର ସ୍ୱର ସୁସ୍ପଷ୍ଟ । ଯଥା :

"ପିଟିପିଟି ସ୍ୱଳ୍ପ କୁନ୍ତଳ ଲୋଟେ ଚରଣ ତଳେ/ଶିରେ ବଙ୍କାପଣୀ ଶୋଭଇ ନାନା
କୁସୁମ ମାଳେ ।
ଶ୍ରବଣେ ଫୁଲର କୁଣ୍ଡଳ ମନ୍ଦେ ମନ୍ଦେ ଦୋଳଇ/ଦର୍ପଣ ପରାୟେ ଦେବୀଙ୍କ ଗଣ୍ଡ
ସ୍ୱଚ୍ଛ ଦିଶଇ ।"

କେନ୍ଦୁଝରର ସାରସ୍ୱତ ପରମ୍ପରା ବାସ୍ତବରେ ବିବିଧ ଓ ବୈଶିଷ୍ଟ୍ୟ । କେନ୍ଦୁଝରର କବିକୁଳ ଯେ କେବଳ କାବ୍ୟ କବିତା ଲେଖି ଉତ୍କଳ ଭାରତୀଙ୍କ ଭଣ୍ଡାରକୁ ସମୃଦ୍ଧ କରି ଯାଇଛନ୍ତି ତା ନୁହେଁ, ସପ୍ତଦଶ ଶତକର କବି ନୀଳକଣ୍ଠ ସଂସ୍କୃତ ଭାଷାରେ ଭଞ୍ଜ ମହୋଦୟମ୍ ନାମକ ନାଟକ ରଚନା କରି ଉତ୍କଳର ମୁଖ ଉଜ୍ଜ୍ୱଳ କରିଛନ୍ତି । ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରୁ ଏ ଯାବତ୍ ବହୁ ସାଧକଙ୍କ ସାଧନା ସମୃଦ୍ଧ ସାହିତ୍ୟର ଏହି ସ୍ରୋତସ୍ୱିନୀ ଉତ୍କଳ ସାହିତ୍ୟ ରୂପୀ ପୂଣ୍ୟତୋୟା ଗଙ୍ଗୋଦ୍ରୀକୁ ପରିପୁଷ୍ଟ କରିବା ସହ ପାଠକର ମନୋଭୂମିକୁ ପ୍ଲାବିତ କରି ଆସୁଥିବ ଯୁଗରୁ ଯୁଗାନ୍ତର ଯାଏ ।

---

ମଞ୍ଜୁଆ,
କେନ୍ଦୁଝରଗଡ଼-୭୫୮୦୦୧



ରାଜ୍ୟ ସଚିବାଳୟଠାରେ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମର କାର୍ଯ୍ୟକାରିତା ଉପରେ ଭାରତ ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ଶାସନ ସଚିବ ଶ୍ରୀ ବି: ଏନ୍: ଯୁଗାନ୍ଧର, ମୁଖ୍ୟ ଶାସନ ସଚିବ ଶ୍ରୀ ରବି ନାରାୟଣ ଦାସ, ଉପମୁଖ୍ୟ ଶାସନ ସଚିବ ଶ୍ରୀ ଆର୍: କେ: ଭୁଜବଳ ଓ ପଞ୍ଚାୟତିରାଜ ବିଭାଗର ପ୍ରମୁଖ ଶାସନ ସଚିବ ଡକ୍ଟର ଲକ୍ଷ୍ମୀଧର ମିଶ୍ରଙ୍କ ସହିତ ଆଲୋଚନା କରୁଛନ୍ତି ।

# ଓଡ଼ିଶା ନାଟ୍ୟ ଜଗତର ଏକ ଅମ୍ଳାନ ଜ୍ୟୋତିଷ୍କ ମଞ୍ଚଶ୍ରୀ ମାଷ୍ଟର ରାମଚନ୍ଦ୍ର ମାଣିଆଁ

ଶ୍ରୀ ଅବଦୟ କୁମାର ବିଶ୍ୱାଳ

ନିମ୍ନମୁଖୀ ଜଳସ୍ରୋତ ଓ ଦୃଢ଼ ପ୍ରତ୍ୟୟୀ ସାଧକ ନିକଟରେ ସଫଳ ଲକ୍ଷ୍ମୀ ସର୍ବଦା କରଯୋଡ଼ି ନତମସ୍ତକ ହୋଇ ବଶତା ସ୍ୱୀକାର କରିବା ଭଳି ତାଙ୍କର ପ୍ରଗାଢ଼ ନିଷ୍ଠା, ଅସୀମ ସାଧନା ଓ ସ୍ୱଳ୍ପ ଶିକ୍ଷାଗତ ଯୋଗ୍ୟତା ସତ୍ତ୍ୱେ ପ୍ରତିକୂଳ ପରିବେଶ ସହିତ ନିଜକୁ ବାଜି ଲଗାଇ ଜଣେ ନାଟ୍ୟ କଳାକାର ରୂପେ ପ୍ରତିଷ୍ଠା ଲାଭ କରିପାରିଥିବା ବ୍ୟକ୍ତି ହେଉଛନ୍ତି ମଞ୍ଚଶ୍ରୀ ମାଷ୍ଟର ରାମଚନ୍ଦ୍ର ମାଣିଆଁ।

୧୮୯୪ ମସିହା ଅଗଷ୍ଟ ୧୫ ତାରିଖରେ କଟଣୀ ନିକଟସ୍ଥ ଗଡ଼ ଡେଙ୍ଗାଳ ଗ୍ରାମର ଏକ ଦରିଦ୍ର ନିଷ୍ପେସିତ ଗୋପାଳ ପରିବାରରେ ତାଙ୍କର ଜନ୍ମ । ପିତାଙ୍କ ନାମ ମଧୁ ମାଣିଆଁ ଏବଂ ମାତାଙ୍କ ନାମ ଲତା ଦେବୀ । ପରିବାର ସହିତ ତାଙ୍କର ବାଲ୍ୟ ଜୀବନ ଅନେକ ଦୁଃଖ କଷ୍ଟରେ ବିତୁଥିଲା, ଯଦିବା ସେ ସମୟରେ ଗ୍ରାମାଞ୍ଚଳରେ ଶିକ୍ଷାର ଗୁରୁତ୍ୱ ନଥିଲା ବା ଅଧ୍ୟୟନ ପାଇଁ ସ୍କୁଲ କଲେଜର ବ୍ୟବସ୍ଥା ନଥିଲା; ତେବେ ଚାଟଶାଳୀ ପାଠର ପ୍ରଚଳନ ଥିଲା । ସେ ସମୟରେ ସେ ଯାହା ଶିକ୍ଷା କରିଥିଲେ ତାହାହିଁ ଥିଲା ତାଙ୍କର ଶିକ୍ଷାଗତ ଯୋଗ୍ୟତାର ମାପକାଠି । ତାଙ୍କୁ ଯେତେବେଳେ ନଅ/ଦଶ ବର୍ଷ ସେ ସମୟରେ ନିଜର ପିତା ମାତାଙ୍କୁ ସ୍ୱଳ୍ପ ସାହାଯ୍ୟ କରିବାକୁ ବାଧ୍ୟ ହେଉଥିଲେ, ଯଥା–ଗୋରୁ ଗୋଠକୁ ଖାଦ୍ୟ ପାନୀୟ ନେବା ବା ଗୋରୁଗାଈ ଜଗିବା କାର୍ଯ୍ୟ କରୁଥିଲେ ଏବଂ ବାଲ୍ୟାବସ୍ଥାରୁ ମଧ୍ୟ ଅତ୍ୟନ୍ତ ସଙ୍ଗୀତ ପ୍ରେମୀ ଥିଲେ ।

ଭାଗ୍ୟର ବିଡ଼ମ୍ବନା ହଠାତ୍ ଦିନେ ତାଙ୍କୁ ବିଚଳିତ କରିଦିଏ । ତାଙ୍କୁ ଯେତେବେଳେ ଦଶ ବର୍ଷ ନିଜ ଗ୍ରାମର ଗୌରାଙ୍ଗ ସାହୁ ନାମକ ଏକ ବାଳକ ସହ ଲୁଚି ଘରୁ ବାହାରିଗଲେ । ସୋମନାଥ ମହାପାତ୍ରଙ୍କ ଦ୍ୱାରା ଗଢ଼ି ଉଠିଥିବା ଗୋଟିପୁଅ ନାଟ୍ୟ ସଙ୍ଗୀତ ଦଳରେ ଯୋଗଦେଲେ । ଉକ୍ତ ସଙ୍ଗୀତ ଦଳରେ ନୃତ୍ୟ ଶିକ୍ଷା କରି ପରେ ପରେ ପରିବେଷଣ କରି ଅନେକ ପ୍ରଶଂସାର ପ୍ରିୟପାତ୍ର ହୋଇ ପାରିଥିଲେ ।

୧୯୦୨ ମସିହାରେ ଓଡ଼ିଶା ବୁକୁରେ ଗଢ଼ି ଉଠିଲା ରାଧାକୃଷ୍ଣ ଥିଏଟର । ଏହା ଓଡ଼ିଶାର ସର୍ବ ପ୍ରଥମ ବ୍ୟବସାୟିକ ନାଟ୍ୟ ଅନୁଷ୍ଠାନ । ଯାହାର ପ୍ରତିଷ୍ଠାତା ଥିଲେ ସାକ୍ଷୀଗୋପାଳ ନିକଟସ୍ଥ ବିଳଞ୍ଚାର ସ୍ୱର୍ଗତଃ ବନମାଳୀ ପତି । ଶ୍ରୀଯୁକ୍ତ ରାମଚନ୍ଦ୍ର ମାଣିଆଁ ସେଥିରେ ଯୋଗଦେଲେ ଏବଂ ଉକ୍ତ ଥିଏଟରର ଶିକ୍ଷକ ଶ୍ରୀଯୁକ୍ତ ବୃନ୍ଦାବନ ବିହାରୀ ଦାସଙ୍କଠାରୁ ଅଭିନୟ ଓ ସଙ୍ଗୀତ ଶିକ୍ଷା କରିଥିଲେ । ଏହା କେତେକ କାରଣରୁ ଭାଙ୍ଗିଗଲା ଏବଂ ସ୍ୱର୍ଗତ ବନମାଳୀ ପତିଙ୍କର ସ୍ମୃତି ଉଦ୍ଦେଶ୍ୟରେ ବନମାଳୀ ଆର୍ଟ ଥିଏଟର ଗଢ଼ି ଉଠିଲା । ଯାହାର ପରିଚାଳନା ଦାୟିତ୍ୱରେ ଥିଲେ ସ୍ୱର୍ଗତ ଅଶ୍ୱିନୀ କୁମାର ଘୋଷ । ଜଣାଯାଏ ସେ ସମୟରେ ସ୍ତ୍ରୀ ଲୋକମାନେ ନାଟକରେ ଅଂଶ ଗ୍ରହଣ କରିବାର ସୁଯୋଗ ନଥିଲା । ତେଣୁ ପୁରୁଷମାନେ ସ୍ତ୍ରୀ ଭୂମିକାରେ ଅଭିନୟ କରୁଥିଲେ । ଶ୍ରୀଯୁକ୍ତ ରାମଚନ୍ଦ୍ର ମାଣିଆଁ ଓ ଶ୍ରୀଯୁକ୍ତ କଣ୍ଠ ରାଓ ସ୍ତ୍ରୀ ଭୂମିକାରେ ଅଭିନୟ କରି ବହୁବାର ପ୍ରଶଂସିତ ହୋଇଛନ୍ତି । କିଛି ବର୍ଷ ପରେ ଅର୍ଥାଭାବରୁ ବନମାଳୀ ଥିଏଟର ମଧ୍ୟ ବନ୍ଦ ହୋଇଗଲା । ପରେ ପରେ ସୋମନାଥ ଦାସଙ୍କ ଦ୍ୱାରା ପ୍ରତିଷ୍ଠା ଲାଭ କଲା ଅନ୍ନପୂର୍ଣ୍ଣା ଥିଏଟର । କିଛି କାରଣ ନେଇ ବନମାଳୀ ଥିଏଟରରୁ ଶ୍ରୀଯୁକ୍ତ ମାଣିଆଁ ଚାଲିଆସି ଅନ୍ନପୂର୍ଣ୍ଣା ଥିଏଟରରେ ଯୋଗ ଦେଲେ ଏବଂ ତାଙ୍କର କଳା ପରିବେଷଣରେ ଉକ୍ତ ଥିଏଟର ଦିନକୁ ଦିନ ଲୋକପ୍ରିୟ ହେବାକୁ ଲାଗିଲା । ଯାହାକି କେବଳ ଓଡ଼ିଶା ନୁହେଁ ବଙ୍ଗଳା ଓ ବିହାରରେ ମଧ୍ୟ ପ୍ରସିଦ୍ଧି ଲାଭ କଲା । ତାଙ୍କ ସହିତ ଆଉ ମଧ୍ୟ କେତେକ ବିଶିଷ୍ଟ କଳାକାର ଯୋଗ ଦେଇଥିଲେ । ସେମାନେ ହେଲେ ମଞ୍ଚଶ୍ରୀ ବାଉରୀବନ୍ଧୁ, କାର୍ତ୍ତିକ କୁମାର ଘୋଷ, ନଟବର ସେଣ ଓ କଣ୍ଠ ରାଓ ପ୍ରମୁଖ ଅଟନ୍ତି । ଅନ୍ନପୂର୍ଣ୍ଣା ଥିଏଟରରେ ଯେଉଁ କେତୋଟି ବିଷୟ ଅଭିନୀତ ହେଉଥିଲା ସେଥିରେ ମାଷ୍ଟ ମାଣିଆଁ ମୁଖ୍ୟ ଭୂମିକାରେ ଅଭିନୟ କରୁଥିଲେ, ଯଥା–କଳାପାହାଡ଼ ଭୂମିକାରେ, ବଳି ଜଗବନ୍ଧୁରେ ବଳି ଜଗବନ୍ଧୁ, ବୁଢ଼ାସଙ୍ଖାରୀରେ ଶଙ୍ଖାରୀ, ଉକ୍ତ ସାଲବେଗରେ ସାଲବେଗ ଇତ୍ୟାଦି ମୁଖ୍ୟ ଅଟେ । ଏଭଳି କି ଉକ୍ତ କଳାପାହାଡ଼ ବିଷୟଟି କଲିକତାର ଏକ ସ୍ଥାନରେ ଆଠ ରାତି ଅଭିନୀତ ହୋଇଥିଲା ଏବଂ ମାଷ୍ଟର ମାଣିଆଁ କଳାପାହାଡ଼ ଭୂମିକାରେ ଅଭିନୟ କରି ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲେ । ସେ ସମୟରେ ଏଭଳି ଚହଳ ପଡ଼ିଗଲା ଯେ ଅନ୍ନପୂର୍ଣ୍ଣା ଥିଏଟରର କଳାପାହାଡ଼ ବିଷୟଟି ଦେଖିବାକୁ ଗର୍ଭବତୀ ମହିଳା ଏବଂ ଛୋଟ ଛୋଟ ପିଲାମାନଙ୍କୁ ନିଷେଧ କରାଗଲା । ଅନ୍ନପୂର୍ଣ୍ଣା ଥିଏଟରରେ ତାଙ୍କର କଳା ପ୍ରତିଭା ଦିନକୁ ଦିନ ଏଭଳି ବିକଶିତ ହେବାକୁ ଲାଗିଲା ଯାହା ଫଳରେ କିଛି ବର୍ଷ ପରେ ଉକ୍ତ ଥିଏଟରରେ ସେ ମାଷ୍ଟର ହୋଇ ନିର୍ଦ୍ଦେଶନା ଦେଲେ । ଏହା ସହିତ କଟଣୀ, ପିପିଲି, ଡେଲାଙ୍ଗ, ଖୋର୍ଦ୍ଧାର ବିଭିନ୍ନ କ୍ଲବ୍‌ର କେତୋଟି ସ୍ଥାନରେ ନିର୍ଦ୍ଦେଶନା ଦେଇଛନ୍ତି । ବିଶେଷ କରି କଟଣୀର ରାଜରାଣୀ କ୍ଲବ୍‌ରେ ତାଙ୍କର ଦେଇଛନ୍ତି । ବିଶେଷ କରି କଟଣୀର ଉତ୍ତରାଣୀ କ୍ଲବ୍‌ରେ ତାଙ୍କର ... 

ସର୍ବ ପ୍ରଥମେ ଓଡ଼ିଶାରେ ଯେଉଁ କେତୋଟି ଚଳଚ୍ଚିତ୍ର ଚହଳ ପକାଇଥିଲା, ଯଥା–ଶ୍ରୀଜଗନ୍ନାଥ, ଯାଯାବର, ମାଟିର ମଣିଷ ଇତ୍ୟାଦିରେ ଅଭିନୟ କରି ତାଙ୍କର କଳା ପ୍ରତିଭାକୁ ସେ ସୁନ୍ଦର ଭାବରେ ପ୍ରଦର୍ଶନ କରି ପାରିଛନ୍ତି । ପୁଣି କେତେକ ଚଳଚ୍ଚିତ୍ରରେ ଅଭିନୟ କରିବାକୁ ତାଙ୍କୁ ଡକାଯାଇଛି । କିନ୍ତୁ ନିଜର ବୃଦ୍ଧ ବୟସ ଯୋଗୁଁ ସେ ମନା କରିଥିଲେ ।

ଶ୍ରୀଯୁକ୍ତ ମାଣିଆଁଙ୍କ ପରିବାର ସମ୍ପର୍କରେ କହିବାକୁ ଗଲେ ସାହେବ ଓ ସଧବା ନାମରେ ଦୁଇଟି ଝିଅ ଏବଂ ନିଜର ଭାଇଙ୍କ ପୁଅକୁ ପୋଷ୍ୟ ପୁତ୍ର ଭାବେ ଗ୍ରହଣ କରିଥିଲେ । ତାଙ୍କର ନାମ ଶ୍ରୀଯୁକ୍ତ ନଟବର ମାଣିଆଁ । ସେ ବର୍ତ୍ତମାନ ୬୭ ବର୍ଷରେ ପଦାର୍ପଣ କଲେଣି । ସେ କୁହନ୍ତି ଦୀର୍ଘ ଦୁଇବର୍ଷ ବାପାଙ୍କ ସାଙ୍ଗରେ ବିଭିନ୍ନ କ୍ଲବ୍‌ରେ ଯୋଗ ଦେଇଛି ଏବଂ ବିଭିନ୍ନ ଯାଗାରେ ବୁଲିବୁଲି ନାଟକ ମଧ୍ୟ ଦେଖିଛି । କିନ୍ତୁ ମୁଁ ହତଭାଗ୍ୟ କିଛି ଶିଖିପାରିଲି ନାହିଁ କିମ୍ବା ଜାଣିପାରିଲି ନାହିଁ । ଏହା ମୋ ଜୀବନର ବୃହତ୍ ଅବଶୋଷ ହୋଇ ରହିଗଲା । ଜୀବନର ଶେଷ ଦଶବର୍ଷ ମାଷ୍ଟର ମାଣିଆଁ ନିଜର ପ୍ରିୟ ଜନ୍ମଭୂମି ଗଡ଼ ରେଙ୍ଗାଳ ଗ୍ରାମରେ ଅନେକ ଦୁଃଖ କଷ୍ଟରେ ଅତିବାହିତ କରିଛନ୍ତି । ଅନେକଙ୍କୁ ମଧ୍ୟ ଗୀତ, ହାରମୋନିୟମ୍, ଅଭିନୟ ଶିକ୍ଷା ଦେଇଛନ୍ତି । ମାଷ୍ଟର ମାଣିଆଁଙ୍କର ଶୁଭ ଆଶୀର୍ବାଦ ନେଇ କେତେକ ଚଳଚ୍ଚିତ୍ର ଦୁନିଆରେ ସୁନାମ ଅର୍ଜନ କରିଛନ୍ତି । ତାଙ୍କର ନାମ ଶୁଣିବା ମାତ୍ରେ ପ୍ରଣାମ କରନ୍ତି, କେତେଜଣ ଆସରବରେ କିଛି କୁହନ୍ତି ନାହିଁ । ୧୯୭୨ ମସିହାରେ ଓଡ଼ିଶା ସରକାରଙ୍କ ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ତାଙ୍କୁ ଶ୍ରେଷ୍ଠ ଅଭିନେତା ଭାବେ ସମ୍ମାନିତ କରାଯାଇଥିଲା ।

ତାଙ୍କର ମଧ୍ୟ କେତେକ ନିଜସ୍ୱ ପାଣ୍ଡୁଲିପି ଥିଲା, କିନ୍ତୁ ତାହା ଆଜି ଅଜ୍ଞାତ । ଦୁଃଖର ବିଷୟ ଏଭଳି ଏକ ନାମକରା ପ୍ରତିଷ୍ଠାବାନ କଳାକାର ହୋଇ ମଧ୍ୟ ସେ ନିଜ ପାଇଁ କିଛି କରିପାରି ନାହାନ୍ତି । ଆଜି ପର୍ଯ୍ୟନ୍ତ ମଧ୍ୟ ସେମିତି ଝାଟିମାଟି ଖପର ଛପର ଘର । ସର୍ବଶେଷରେ ଅନେକ ଦୁଃଖ କଷ୍ଟରେ ଅଭାବ ଅନଟନରେ କାଳାତିପାତ କରି ୧୯୭୭ ମସିହାରେ ତାଙ୍କର ଦେହାବସାନ ଘଟିଲା ।

ଯଦି ସେ ବର୍ତ୍ତମାନର କଳାକାର ହୋଇଥାନ୍ତେ, ତାଙ୍କର ପ୍ରାସାଦ ଆଜି ରାଜଧାନୀର କେନ୍ଦ୍ର ସ୍ଥଳରେ ଝଟକୁ ଥାଆନ୍ତା ଏବଂ ପରିବାର ସୁଖ ଶାନ୍ତିରେ କାଳାତିପାତ କରୁଥାନ୍ତେ । କିନ୍ତୁ କୌଣସି କଳାକାର ବା ଓଡ଼ିଶା ସରକାର ତାଙ୍କ ପାଇଁ ଏକ ପୁସ୍ତକ ବା ଏକ କ୍ଷୁଦ୍ର ପତ୍ରିକା ଉନ୍ମୋଚନ କରିପାରିଲା ନାହିଁ କି ପରିବାରକୁ ମଧ୍ୟ କିଛି ଅନୁଦାନ ମିଳିଲା ନାହିଁ ।

ମଞ୍ଚଶ୍ରୀ ମାଷ୍ଟର ରାମଚନ୍ଦ୍ର ମାଣିଆଁଙ୍କର ଓଡ଼ିଶାର ନାଟ୍ୟଜଗତକୁ ଅମୂଲ୍ୟ ଦାନ ପାଇଁ ସେ ଅଭିନୟ ଆକାଶରେ ଅମଳିନ ଜ୍ୟୋତିଷ୍କ ରୂପରେ ସର୍ବଦା ବିଦ୍ୟମାନ ରହିଛନ୍ତି ଏବଂ ରହିବେ ମଧ୍ୟ ।

ସହାୟକ ଗ୍ରନ୍ଥ :
(୧) ଓଡ଼ିଶା ନାଟକର ବିକାଶ ଧାରା (୪ ଖଣ୍ଡ)
(୨) ନାଟ୍ୟକଳା ଏବଂ ମୋର ନଟ ଜୀବନ (କାର୍ତ୍ତିକ ଘୋଷ)
(୩) ମଞ୍ଚଶ୍ରୀ ବାଉରୀବନ୍ଧୁ (ନଟବର ସେଣ)

ଗ୍ରାମ : ଗଡ଼ ରେଙ୍ଗାଳ, ପୋ:ଅ: ଗୋଡ଼ିପୁଟ ମାଟିଆପଡ଼ା,
ଭାୟା : ଜଟଣୀ, ଜିଲ୍ଲା : ପୁରୀ–୭୫୨୦୫୦




ଛତ୍ରପୁରଠାରେ ଜାତୀୟ ସଂହତି ସପ୍ତାହ ପାଳନ ଉପଲକ୍ଷେ ଆୟୋଜିତ ସଭାରେ ଅତିରିକ୍ତ ଜିଲ୍ଲାପାଳ ଶ୍ରୀ ଲକ୍ଷ୍ମୀଧର ଦାସ ଉଦ୍‌ବୋଧନ ଦେଉଛନ୍ତି ।

# 'ଶ୍ରୀପୁର' ଗୌରବମୟ ଦକ୍ଷିଣ କୋଶଳର ରାଜଧାନୀ

ଅଧ୍ୟାପକ ହିମାଂଶୁ ଶେଖର ପାଢ଼ୀ

ଅତୀତ ଇତିହାସରୁ ଜଣାଯାଏ, ଏକଦା ଶ୍ରୀପୁର, ଗୌରବମୟ ଦକ୍ଷିଣ କୋଶଳର ରାଜଧାନୀ ଥିଲା । ତତ୍କାଳୀନ ଦକ୍ଷିଣ କୋଶଳ ଏକ ସମୃଦ୍ଧ ରାଜ୍ୟ ଥିଲା ବୋଲି ଇତିହାସ ସାକ୍ଷ୍ୟ ଦିଏ । ଶ୍ରୀପୁର ଦକ୍ଷିଣ କୋଶଳର ରାଜଧାନୀ ହେବା ପୂର୍ବରୁ ଏହାର ରାଜଧାନୀ ଥିଲା ସର୍ବପୁର । ସର୍ବପୁରର ଅବସ୍ଥିତି ଉପରେ ଇତିହାସରୁ କୌଣସି ପ୍ରମାଣ ମିଳେ ନାହିଁ । ଖ୍ରୀ:ଅ: ୬୫୦ କିମ୍ବା ଏହାର ପାଖାପାଖି ସମୟରେ ସର୍ବପୁରୀୟ ରାଜାମାନଙ୍କ ଦ୍ୱାରା ଦକ୍ଷିଣ କୋଶଳର ରାଜଧାନୀ ସର୍ବପୁରରୁ ଶ୍ରୀପୁରକୁ ଉଠାଇ ନିଆଯାଇଥିଲା । ଏହି ଶ୍ରୀପୁର ମଧ୍ୟପ୍ରଦେଶର ରାୟପୁର ଜିଲ୍ଲାର ସଦର ମହକୁମାଠାରୁ ୩୨ କି.ମି. ଦୂରରେ ମହାନଦୀ କୂଳରେ ଅବସ୍ଥିତ ।

ଖ୍ରୀ:ଅ: ୬୫୫ରେ ରାଜା ସୁଦେବ ରାଜଙ୍କ ମୃତ୍ୟୁ ପରେ ପ୍ରବର ରାଜ ଦକ୍ଷିଣ କୋଶଳର ସିଂହାସନ ଆରୋହଣ କଲେ । ତାଙ୍କର ଥକୁଦିହ ଦାନପତ୍ରରୁ ସେ ରାଜା ମାନପଣଙ୍କ ପୁତ୍ର ଥିବାର ଜଣାଯାଏ । ପ୍ରବର ରାଜାଙ୍କ ମଲ୍ଲାର ଓ ଥକୁଦିହ ଦାନ ପତ୍ର ଶ୍ରୀପୁରରୁ ଦିଆହୋଇଥିଲା । ତାଙ୍କର ଏକ ଦାନ ପତ୍ରରେ ସେ ନିଜର ବାହୁ ବଳରେ ପୃଥିବୀ ଜୟ କରିବାର ଦାବୀ କରନ୍ତି । ଯାହା ତାଙ୍କର ପୂର୍ବପୁରୁଷମାନେ କରିନଥିଲେ । ତାଙ୍କର ଶ୍ରୀପୁରର ରାଜସିଂହାସନ ଆରୋହଣ ସୁସ୍ଥରୁ ରୂପେ ହୋଇନଥିବାର ଜଣାଯାଏ । ଏଥିରୁ ଅନୁମାନ କରାଯାଏ ଯେ ତତ୍କାଳୀନ ଦକ୍ଷିଣ କୋଶଳ ଦୁଇ ଭାଗରେ ବିଭକ୍ତ ହୋଇଥିଲା । ଜଣେ ରାଜା ସର୍ବପୁରରୁ ଏବଂ ଅନ୍ୟ ଜଣେ ରାଜା ଶ୍ରୀପୁରରୁ ଶାସନ କରୁଥିଲେ । ପ୍ରଥମ ସୁଦେବ ରାଜଙ୍କ ରାଜତ୍ୱରେ ଅନ୍ତିମ ପର୍ଯ୍ୟାୟରେ କିମ୍ବା ତତ୍ ପରେ ସର୍ବପୁରୀୟମାନଙ୍କ ମଧ୍ୟରେ ଗୃହଯୁଦ୍ଧ ହୋଇଥିଲା । ଫଳରେ ସୁଦେବ ରାଜଙ୍କ ପୁତ୍ର ଦୁର୍ଗାରାଜ ସର୍ବପୁରର ରାଜା ହେଲେ ଏବଂ ପ୍ରବର ରାଜ ସ୍ୱାଧୀନ ରାଜା ଭାବରେ ଶ୍ରୀପୁରରୁ ଅଭିଷିକ୍ତ ହେଲେ ।

ସପ୍ତମ ଶତାବ୍ଦୀର ଚୀନ୍ ପରିବ୍ରାଜକ ହୁଏନ୍‌ସାଂ ଦକ୍ଷିଣ କୋଶଳକୁ ଯାଇଥିଲେ । ସେ ତତ୍କାଳୀନ ଦକ୍ଷିଣ କୋଶଳ ଏବଂ ଏହାର ରାଜଧାନୀ ଉପରେ ଏକ ବିଶଦ ବିବରଣୀ ପ୍ରଦାନ କରିଛନ୍ତି । ହୁଏନ୍‌ସାଙ୍ଗ ପରିଭ୍ରମଣ ସମୟରେ ଦକ୍ଷିଣ କୋଶଳ ସର୍ବପୁରୀୟ ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିବାର ଜଣାଯାଏ । ଏହାର ରାଜଧାନୀ ଥିଲା ଶ୍ରୀପୁର । ସେ ବୁଦ୍ଧଙ୍କ ନୀତିକୁ ସମ୍ମାନ ଦେଉଥିଲେ ଏବଂ କଳା ଓ ସାହିତ୍ୟର ଜଣେ ଦକ୍ଷ ପୃଷ୍ଠପୋଷକ ଥିଲେ । ରାଜ୍ୟରେ ଏକ ଶହରୁ ଅଧିକ ମଠ ଥିଲା ଏବଂ ଦଶ ସହସ୍ର ମହାଯାନୀୟ ସନ୍ୟାସୀ ଥିଲେ । ଏତଦ୍ ବ୍ୟତୀତ ଅନେକଗୁଡ଼ିଏ ଦେବ ମନ୍ଦିର ମଧ୍ୟ ଥିବାର ଜଣାଯାଏ ।

ସର୍ବ ପୁରୀୟ ରାଜା ପ୍ରବରରାଜଙ୍କଠାରୁ ଆରମ୍ଭ କରି ସୋମବଂଶୀୟ ରାଜା ଜନ୍ମେଜୟଙ୍କ ପର୍ଯ୍ୟନ୍ତ ଅନେକ ରାଜା ଶ୍ରୀପୁରରୁ ଶାସନ କରିଥିଲେ । ଭାତୃ ବିବାଦ ରୋଗରେ ଆକ୍ରାନ୍ତ ହୋଇ ସର୍ବପୁରୀୟମାନଙ୍କ ପତନ ଘଟିବା ପରେ ଶ୍ରୀପୁର ସୋମବଂଶୀମାନଙ୍କ ହସ୍ତଗତ ହେଲା । ସୋମବଂଶର ପ୍ରଥମ ରାଜା ତିବର ଦେବ ଖ୍ରୀ:ଅ: ୭୦୦ରୁ ୭୨୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତିବର ଦେବଙ୍କ ରାଜ୍ୟ ବିନ୍ଧ୍ୟ ପର୍ବତ ଅର୍ଥାତ୍ ମେକଳ ରାଜ୍ୟ ପର୍ଯ୍ୟନ୍ତ ବିସ୍ତୃତ ଥିବାର ଜଣାଯାଏ । ଖ୍ରୀ:ଅ: ୭୨୫ରେ ତିବର ଦେବଙ୍କ ପରେ ନନ୍ନରାଜ ଶ୍ରୀପୁରର ରାଜସିଂହାସନ ଆରୋହଣ କରିଥିଲେ । ତା'ପରେ ଖ୍ରୀ:ଅ: ୭୫୦ ପର୍ଯ୍ୟନ୍ତ ଚନ୍ଦ୍ରଗୁପ୍ତ ରାଜତ୍ୱ କଲେ । ଚନ୍ଦ୍ରଗୁପ୍ତଙ୍କ ପରେ ହର୍ଷଗୁପ୍ତ ଶ୍ରୀପୁର ରାଜା ହେଲେ । ତାଙ୍କ ରାଜତ୍ୱରେ ତତ୍କାଳୀନ ରାଷ୍ଟ୍ରକୂଟ ସମ୍ରାଟ ଦନ୍ତିଦୁର୍ଗ ଦକ୍ଷିଣ କୋଶଳ ଆକ୍ରମଣ କରିଥିଲେ ଏବଂ ତାଙ୍କ ସହିତ ଯୁଦ୍ଧ କରି ହର୍ଷଗୁପ୍ତ ମୃତ୍ୟୁ ବରଣ କରିଥିଲେ । ସେ ସମୟରେ ତାଙ୍କର ପୁତ୍ର ବାଳାର୍ଜ୍ଜୁନ ନାବାଳକ ଥିଲେ । ତେଣୁ ହର୍ଷଗୁପ୍ତଙ୍କ ମୃତ୍ୟୁ ପରେ ମହାରାଣୀ ବାସଟା ରାଜ୍ୟଭାର ଗ୍ରହଣ କଲେ । ସେ ପ୍ରାୟ ୩୦ ବର୍ଷ କାଳ ଶାସନ କରିବାର ଜଣାଯାଏ । ସେ ପରମେଶ୍ୱର ଶିବଙ୍କ ଭକ୍ତ ଥିଲେ । ତାଙ୍କ ସମୟରେ ରାଷ୍ଟ୍ରକୂଟ ସମ୍ରାଟ ତୃତୀୟ ଗୋବିନ୍ଦ ଦକ୍ଷିଣ କୋଶଳ ଆକ୍ରମଣ କରିଥିଲେ । ତାଙ୍କ ପରେ ମହାଭବଗୁପ୍ତ ଓ ମହାଶିବଗୁପ୍ତ ଖ୍ରୀ:ଅ: ୮୧୦ରୁ ୮୫୦ ପର୍ଯ୍ୟନ୍ତ ଶାସନ କରିଥିବାର ଜଣାଯାଏ । ମହାଶିବଗୁପ୍ତଙ୍କ ସମୟରେ ପଶ୍ଚିମ ପାର୍ଶ୍ୱରେ ପରାକ୍ରମଶାଳୀ କଳଚୁରୀ ରାଜାମାନଙ୍କ ଆକ୍ରମଣ ଏକ ପ୍ରଧାନ ସମସ୍ୟା ଥିଲା । ସେମାନଙ୍କ ଆକ୍ରମଣକୁ ପ୍ରତିରୋଧ କରିବାରେ ସୋମବଂଶୀ ରାଜାମାନେ ଅସମର୍ଥ ହେବାରୁ ଶ୍ରୀପୁରରୁ ଚିରଦିନ ପାଇଁ ରାଜଧାନୀକୁ ଉଠାଇ ନିଆଯାଇଥିଲା । ଏହା ପରେ ଶ୍ରୀପୁର ତା'ର ପୂର୍ବ ଗୌରବ ହରାଇ ବିସ୍ମୃତି ଗର୍ଭରେ ବିଲୁପ୍ତ ହୋଇଯାଇଥିଲା ।

ସର୍ବ ପୁରୀୟ ଓ ସୋମବଂଶୀ ରାଜାମାନଙ୍କ ରାଜତ୍ୱରେ ଶ୍ରୀପୁର ପ୍ରଗତିର ଶୀର୍ଷ ସୀମାକୁ ଉଠି ପାରିଥିଲା । ତତ୍କାଳୀନ ଶ୍ରୀପୁର ଏକ ଉନ୍ନତ ଅଞ୍ଚଳ ଥିବାର ଜଣାଯାଏ । ଏହି ଯୁଗ ବଂଶର

ରାଜାମାନେ ବିଷ୍ଣୁ ଓ ଶିବଙ୍କ ପରମ ଭକ୍ତ ଥିଲେ । ସେମାନଙ୍କ ପୃଷ୍ଠପୋଷକତା ଲାଭ କରି ଶ୍ରୀପୁର ଏକ ମନ୍ଦିରମୟୀ ସହରରେ ପରିଣତ ହେବାର ସୌଭାଗ୍ୟ ଲାଭ କରିଥିଲା । ବିଶେଷତଃ ରାଣୀ ବାସଟା ପୁରୁଷୋତ୍ତମଙ୍କ ପରମ ଭକ୍ତ ଥିଲେ ଏବଂ ଅନେକ ବିଷ୍ଣୁ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କ ପୁତ୍ର ବାଳାର୍ଜ୍ଜୁନ ଶିବଙ୍କର ପରମ ଭକ୍ତ ଥିଲେ । ତାଙ୍କ ଦ୍ୱାରା ଅନେକ ଶିବ ମନ୍ଦିର ନିର୍ମାଣ କରାଯାଇଥିବାର ଜଣାଯାଏ । ସେହି ମନ୍ଦିରମାନଙ୍କ ମଧ୍ୟରୁ ଏବେ ମଧ୍ୟ ଅନେକ ବିଦ୍ୟମାନ । ଯେଉଁଗୁଡ଼ିକ ସମୟର କରାଳ କବଳରେ ଲୁପ୍ତ ହୋଇଯାଇଛି ତାର ଧ୍ୱଂସାବଶେଷ ଏବେ ମଧ୍ୟ ଶ୍ରୀପୁରରେ ଦୃଷ୍ଟିଗୋଚର ହୁଏ । ଶ୍ରୀପୁରରେ ଥିବା ଲକ୍ଷ୍ମଣେଶ୍ୱର ମନ୍ଦିର ଭାରତ ବିଖ୍ୟାତ । ଏହି ମନ୍ଦିରର କଳା ଓ ସ୍ଥାପତ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ଏହା ରାଣୀ ବାସଟା କିମ୍ବା ତାଙ୍କ ପୁତ୍ର ବାଳାର୍ଜ୍ଜୁନଙ୍କ ଦ୍ୱାରା ନିର୍ମିତ ହୋଇଥିବାର ଜଣାଯାଏ । ଲକ୍ଷ୍ମଣେଶ୍ୱର ମନ୍ଦିର କେବଳ ନାଲି ଇଟାରେ ନିର୍ମିତ ହୋଇଥିଲା । ଦକ୍ଷିଣ କୋଶଳର ରାଜଧାନୀ ଶ୍ରୀପୁର ବୌଦ୍ଧ ଧର୍ମ ଓ ସଂସ୍କୃତିର ପ୍ରଧାନ ପୀଠସ୍ଥଳୀ ଥିବାର ଅନୁମାନ କରାଯାଏ । ଏଠାରେ ହୋଇଥିବା ପ୍ରତ୍ନତାତ୍ତ୍ୱିକ ଖନନ ଫଳରେ ଗୋଟିଏ ବୌଦ୍ଧ ବିହାର ଏବଂ କଳା ମୁଗୁନି ପଥରରେ ନିର୍ମିତ ବିଭିନ୍ନ ମୁଦ୍ରାରେ ଥିବା ଦୁଇଟି ବୁଦ୍ଧ ମୂର୍ତ୍ତି ଭୂ-ଗର୍ଭରୁ ଆବିଷ୍କୃତ ହୋଇଛି । ମଧ୍ୟପ୍ରଦେଶ ସରକାରଙ୍କ ଦ୍ୱାରା ଏଠାରେ ଏକ ସଂଗ୍ରହାଳୟ ସ୍ଥାପନ ହୋଇଛି । ଏହି ସଂଗ୍ରହାଳୟରେ ଯଥାକ୍ରମେ ମକର, ନଗାଂଚ, ଦୁର୍ଗା, ଷଷ୍ଠି, ବିଷ୍ଣୁ, ଶିବ ପ୍ରଭୃତି ଅନେକ ହିନ୍ଦୁ ଦେବ ଦେବୀଙ୍କ ପ୍ରତିମା ତଥା ଅନେକ ବୌଦ୍ଧ ମୂର୍ତ୍ତି ଦେଖିବାକୁ ମିଳେ । ଏତଦ୍ ବ୍ୟତୀତ ରାଜା ବ୍ୟାଘ୍ର କିମ୍ବା ସିଂହ ସହିତ ଯୁଦ୍ଧ କରୁଥିବାର ଏକ ମୂର୍ତ୍ତି ରହିଛି । ଏଥି ସହିତ ଅନେକ ଶିବଲିଙ୍ଗ ଏବଂ ନର୍ତ୍ତକୀ, ଗାୟକ, ବାଦ୍ୟକାର ପ୍ରଭୃତିଙ୍କ ମୂର୍ତ୍ତି ମଧ୍ୟ ଏଠାରେ ଦୃଷ୍ଟିଗୋଚର ହୁଏ ।

ବିଚାର କଲେ ଜଣାଯାଏ ଯେ ଶ୍ରୀପୁର ସର୍ବପୁରୀୟ ତଥା ସୋମବଂଶୀ ରାଜାମାନଙ୍କ ପୃଷ୍ଠପୋଷକତା ଲାଭ କରି ଏକ ମନ୍ଦିରମୟୀ ସହରରେ ପରିଣତ ହୋଇଥିଲା । ଏଠାରେ ଏକ ସମୟରେ ଅନେକ ବିଷ୍ଣୁ ଓ ଶିବଙ୍କ ମନ୍ଦିର ତଥା ଅନେକ ବୌଦ୍ଧ ବିହାର ଗଢ଼ି ଉଠିଥିଲା । ଏଥିରୁ ଶ୍ରୀପୁରର ରାଜାମାନଙ୍କର ଉଦାରତାର ପ୍ରମାଣ ମିଳେ ।

ଇତିହାସ ବିଭାଗ,
ଆଠମଲ୍ଲିକ ମହାବିଦ୍ୟାଳୟ,
ଆଠମଲ୍ଲିକ, ଅନୁଗୁଳ - ୭୫୯୧୨୩



ରବୀନ୍ଦ୍ର ମଣ୍ଡପଠାରେ ପ୍ରଗତି ସାଂସ୍କୃତିକ ସଂଘ ତରଫରୁ ଆୟୋଜିତ 'ରୁନା ଲୈଲା ନାଇଟ୍' ।

# ବିପ୍ଳବୀ କବି ପଣ୍ଡିତ ଗୋବିନ୍ଦ ରଥ

ଅଧ୍ୟାପକ ମନୋଜ କୁମାର ମହାପାତ୍ର

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ମଧ୍ୟରେ ଓଡ଼ିଆ ଜାତି ଓ ଓଡ଼ିଆ ଭାଷାକୁ ଧ୍ୱଂସମୁଖରୁ ଉଦ୍ଧାର କରିବା ପାଇଁ ଯେଉଁ ଯୋଗଜନ୍ମାମାନେ ଆଗେଇ ଆସିଥିଲେ, ସେମାନଙ୍କ ମଧ୍ୟରେ ବିପ୍ଳବୀ କବି ପଣ୍ଡିତ ଗୋବିନ୍ଦ ରଥ ଥିଲେ ଅନ୍ୟତମ । ୧୮୪୮ ମସିହା କାର୍ତ୍ତିକ ମାସ ନାଗ ଚତୁର୍ଦ୍ଦଶୀ ତଥା ଅକ୍ଟୋବର ମାସ ୨୯ ତାରିଖ ଦିନ ବାଙ୍କୀ ପାଟପୁର ମୌଜା ପଦ୍ମନାଭପୁର ଶାସନ ଗ୍ରାମରେ ପଣ୍ଡିତ ରଥ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଦୀନବନ୍ଧୁ ରଥ ଓ ମାତାଙ୍କ ନାମ କବିବ୍ରତୀ । ମାତା କବିବ୍ରତୀ ଜଣେ ନାରୀ କବି ଭାବେ ପ୍ରତିଷ୍ଠା ଲାଭ କରିଥିଲେ । ନିଜର ମାତାଙ୍କଠାରୁ ଓ ସ୍ୱାଧ୍ୟବସାୟ ବଳରେ ପଣ୍ଡିତ ରଥ ବିଭିନ୍ନ ଶାସ୍ତ୍ର, ପୁରାଣ ଶାସ୍ତ୍ର, ଅଙ୍କ, ଓଡ଼ିଆ ଓ ସଂସ୍କୃତ ଗ୍ରନ୍ଥମାନ ଅଧ୍ୟୟନ କରିପାରିଥିଲେ । ସେ ତାଙ୍କ ଜୀବଦ୍ଦଶାରେ ନିଜକୁ ଦେଶର ସାହିତ୍ୟ, ସଂସ୍କୃତି, ସମାଜ ସଂସ୍କାର ଓ ଜନସେବାରେ ନିୟୋଜିତ କରିଥିଲେ । ତାଙ୍କ ମହାନ୍ ଦେଶସେବାର ଅବଦାନ ବିଷୟରେ ଏଠାରେ ଆଲୋଚନା କରାଯାଉଛି ।

## ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ ବିରୁଦ୍ଧରେ

୧୮୬୮ ମସିହା ଓଡ଼ିଆମାନଙ୍କ ପାଇଁ ଏକ ସଙ୍କଟସନ୍ଧି କାଳ । ସେତେବେଳେ ପଡ଼ୋଶୀ ବଙ୍ଗୀୟମାନେ ଓଡ଼ିଆ ଭାଷାକୁ ବିଲୋପ କରିବାପାଇଁ ଚକ୍ରାନ୍ତ କରୁଥିଲେ ଓ ସେମାନଙ୍କର ଯୁକ୍ତିଥିଲା "ଓଡ଼ିଆ ସ୍ୱତନ୍ତ୍ର ଭାଷାନସ୍ୟ" । ଏହି ଆନ୍ଦୋଳନକୁ ପ୍ରତିହତ କରିବା ପାଇଁ ପଣ୍ଡିତ ରଥ, ବ୍ୟାସକବି ଫକୀରମୋହନ ସେନାପତି, ପ୍ୟାରିମୋହନ ଆଚାର୍ଯ୍ୟ ଓ କର୍ମବୀର ଗୌରୀଶଙ୍କର ଆଦିଙ୍କ ସଙ୍ଗେ ମିଳିତ ହୋଇ ଏହି ଚକ୍ରାନ୍ତକୁ ପଣ୍ଡ କରିଥିଲେ ଓ ଓଡ଼ିଆ ଭାଷାକୁ "ସ୍ୱତନ୍ତ୍ର ଭାଷା" ରୂପେ ପ୍ରତିଷ୍ଠିତ କରାଇ ପାରିଥିଲେ ।

## ଗୋରା–ଶାସକମାନଙ୍କ ଅତ୍ୟାଚାର ବିରୁଦ୍ଧରେ

ଇଂରାଜୀ ଗୋରା ଶାସନ ତଥା ସେମାନଙ୍କର ଅମଲାତନ୍ତ୍ରୀଙ୍କ ଅତ୍ୟାଚାର ବିରୁଦ୍ଧରେ ପଣ୍ଡିତ ରଥ ଦୃଢ଼ ସ୍ୱର ଉତ୍ତୋଳନ କରିଥିଲେ । ବାଙ୍କୀର ନିରୀହ ଜନସାଧାରଣଙ୍କ ପାଇଁ ସେ ବାଙ୍କୀରୁ କଟକ ଓ କଟକରୁ ବାଙ୍କୀ ପ୍ରାୟ ଦୀର୍ଘ ୬୦ କିଲୋମିଟର ରାସ୍ତା ପାଦରେ ଚାଲି ଚାଲି ମୋକଦ୍ଦମା ଲଢୁଥିଲେ । ସେ ବାଙ୍କୀର ତତ୍କାଳୀନ ଦୁର୍ଦ୍ଦାନ୍ତ ଶାସକ ଶ୍ରୀକାନ୍ତ ବୋଷ ଓ ବାଳମୁକୁନ୍ଦ କାନୁନଗୋଙ୍କୁ ମୋକଦ୍ଦମାରେ ପରାସ୍ତ କରିଥିଲେ । ସାହିତ୍ୟ ମାଧ୍ୟମରେ ବ୍ୟଙ୍ଗର ଆଶ୍ରୟ ନେଇ ଅତ୍ୟାଚାରୀ ଅମଲାତନ୍ତ୍ରୀଙ୍କ ବିରୁଦ୍ଧରେ ବିପ୍ଳବର ସ୍ୱର ଉତ୍ତୋଳନ କରି ବିଦ୍ରୁପ ଭାବେ ବିଭିନ୍ନ ଲେଖା ପ୍ରକାଶ କରିଥିଲେ ।

"ମାଗିଆଣିଛନ୍ତି କପଡ଼ା ଚଢ଼ୁଛନ୍ତି ଦୁଲଣ ଘୋଡ଼ା
ଆଉକି ପ୍ରିୟା ପିନ୍ଧିବ ନେଇ ଦେଖୁବ ହେ ।"

## ନିର୍ଭିକ ବ୍ୟକ୍ତିତ୍ୱ

ଜନସାଧାରଣମାନଙ୍କୁ ସାହାଯ୍ୟ କରିବା ପାଇଁ ପଣ୍ଡିତ ରଥ, ପ୍ୟାରିମୋହନ ଆଚାର୍ଯ୍ୟ, କର୍ମବୀର ଗୌରୀଶଙ୍କରଙ୍କ ସହାୟତାରେ ବଙ୍ଗଳାର ଛୋଟଲାଟ ସାହେବଙ୍କ ପାଖରେ ନିର୍ଭୀକ ଭାବେ ସେମାନଙ୍କର ଦୁଃଖ ଦୁର୍ଦ୍ଦଶାମାନ ଉପସ୍ଥାପନ କରୁଥିଲେ । ଭାରତର ବଡ଼ଲାଟ ଲର୍ଡ଼ କର୍ଜନ କଟକ ଆସିବାର ଥାଏ । ସେଥି ପାଇଁ କଟକ ରେଳ ଷ୍ଟେସନଠାରୁ ଲାଟଭବନ ପର୍ଯ୍ୟନ୍ତ ଦୀର୍ଘ ୭ କିଲୋମିଟର ରାସ୍ତାକୁ ନାଲି ଗାଲିଚ୍ଚା ବିଛା ଯାଇ ସୁସଜ୍ଜିତ କରାଯାଇଥାଏ । ସରକାରଙ୍କ ନିର୍ଦ୍ଦେଶ ଥିଲା ଯେ ସେହି ରାସ୍ତାରେ ସେଦିନ କେହି ଯିବା ଆସିବା କରିପାରିବେ ନାହିଁ । କିନ୍ତୁ ପଣ୍ଡିତ ରଥ, "ହମ୍ ପବ୍ଲିକ୍ ରାସ୍ତା ମେ ଚଲିତି ହେ" କହି ସେହି ରାସ୍ତାରେ ଚାଲିଥାନ୍ତି । ରାସ୍ତା ଦୁଇକଡ଼ରେ ବହୁ ଲୋକ ଓ ପୋଲିସ୍‌ଗଣ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଠିକ୍ ସେହି ସମୟରେ ବଡ଼ଲାଟ୍ ସେଠାରେ ପହଞ୍ଚି ରଥଙ୍କ ସହ କରମର୍ଦ୍ଦନ କରି କହିଥିଲେ, "Many thanks Mister Rath", ଏହା ହେଉଛି ପଣ୍ଡିତ ଗୋବିନ୍ଦ ରଥଙ୍କ ନିର୍ଭୀକ ବ୍ୟକ୍ତିତ୍ୱର ପରିଚୟ ।

## ସାହିତ୍ୟ ସୃଷ୍ଟି ଓ ସମାଜ ସଂସ୍କାର

ପଣ୍ଡିତ ରଥ ସାହିତ୍ୟ ମାଧ୍ୟମରେ ସମାଜକୁ ନୂତନ ଦିଗ୍‌ଦର୍ଶନ ଦେଇଛନ୍ତି । ସେ ୭୬ ଖଣ୍ଡ ପୁସ୍ତକ ରଚନା କରିଯାଇଅଛନ୍ତି । ସେହି ପୁସ୍ତକଗୁଡ଼ିକ ମଧ୍ୟରେ, କବିତା କଳାପ, ପଦ୍ୟମଞ୍ଜରୀ, କରତାଳି, କଟକ ନଗରୀ, ମହାମେଳା ଦର୍ଶନ, କୁସୁମ କଳିକା, କବିତା ମଞ୍ଜରୀ, ଚମ୍ପାପୁର, ମନୋରଞ୍ଜନ, ପଞ୍ଚସପ୍ତ ଏବଂ ସାମାଜିକ ପୁସ୍ତକଗୁଡ଼ିକ ମଧ୍ୟରେ ଲାଟ୍ ଦର୍ଶନ, ଔପନ୍ୟାସିକ ସାବାସାରଥୀ ଓ ଯୋଗାବିଦ ଆଦି ତାଙ୍କର ଶ୍ରେଷ୍ଠକୃତୀ, "କର୍ଣ୍ଣବୋଧକ" ସାହେବ ଓ ଓଡ଼ିଆ ବର୍ଣ୍ଣ ପଣ୍ଡିତ ରଥଙ୍କର ଏକ ବିଶିଷ୍ଟ ଅବଦାନ ଓ ଏହା ଓଡ଼ିଆ ବର୍ଣ୍ଣ

ପରିଚୟର ପ୍ରଥମ ଛାପା ପୁସ୍ତକ । କିନ୍ତୁ କାଳର କୁଟିଳ ଗତିରେ ବର୍ଣ୍ଣବୋଧକ ଆଜି ଦୁଷ୍ପ୍ରାପ୍ୟ । ପଣ୍ଡିତ ରଥ ଜଣେ ବାସ୍ତବବାଦୀ, ବ୍ୟଙ୍ଗପ୍ରବଣ, ସମାଜ ସଚେତନ ଓ ସ୍ୱାଧୀନଚେତା ବ୍ୟକ୍ତି । ତାଙ୍କର ରଚନାବଳୀରେ ସେସବୁର ପ୍ରତିଫଳନ ହୋଇଛି । ୧୮୮୮ ମସିହାରେ ବଙ୍ଗଳା ପ୍ରେସିଡେନ୍‌ସିର ଲେଫ୍‌ଟନେଣ୍ଟ ଗଭର୍ଣ୍ଣର ସାର୍ ଷ୍ଟୁଆର୍ଟ କଲ୍‌ଭିନ୍ ବେଲୀ ଓଡ଼ିଶା ପରିଦର୍ଶନରେ ଆସିଥିବାବେଳେ ପଣ୍ଡିତ ରଥ ସେହି ମସିହାର "ଉତ୍କଳ ଦୀପିକା"ରେ "ଲାଟ୍ ଦର୍ଶନ" କବିତାରେ ପ୍ରଚଣ୍ଡ ବିଦ୍ରୂପର ସହିତ ଲେଖିଥିଲେ—

"ମହାମାନ୍ୟ ଲାଟ୍ ଷ୍ଟୁଆର୍ଟ କମିଶନ୍‌ପୁରରେ
ଆମୋଦ ଭୋଜନେ କିଞ୍ଚିତ୍ କାଳ କାଟ ସୁଖରେ
ଅତି ଦୀନ ଆମେ ପରଜା ଦେବୁ କି ଉପହାର
ପେଟର ଜ୍ୱାଳାରେ ବ୍ୟାକୁଳ ଘଟି ଅଛି ବିକାର
ଦେଶ ପ୍ରଚଳିତ ନିୟମେ ରାଜଭେଟି ବିଶ୍ୱରି
କାଠଯୋଡ଼ି ଗର୍ଭୁ ତୋଳିଣ କାଚ ନିର୍ମଳ ବାରି
ଅଞ୍ଜୁଳିଏ ଜଳ ଉତ୍ସର୍ଗ କଲୁ ତୁମ୍ଭ ନାମରେ
ଓଡ଼ିଆଙ୍କ ଉପହାର ଏ ମଣ ହୃଦ ପଦ୍ମରେ ।"

## ଶିକ୍ଷା ଓ ସ୍ୱଦେଶ ପ୍ରୀତି

ତାଙ୍କରି ସହଯୋଗରେ କଟକଠାରେ "ପ୍ୟାରିମୋହନ ଏକାଡେମୀ" ପ୍ରତିଷ୍ଠା ଲାଭ କରିଥିଲା । ପଣ୍ଡିତ ରଥ ବଙ୍ଗର ବିପ୍ନନ୍ ଚନ୍ଦ୍ର ପାଲଙ୍କୁ କଲିକତାରୁ ଡାକିଆଣି ଏକାଡେମୀର ପ୍ରଧାନ ଶିକ୍ଷକ କରାଇଥିଲେ ଓ ନିଜେ ମଧ୍ୟ ଅବୈତନିକ ଭାବେ ସେଠାରେ ଶିକ୍ଷାଦାନ କରୁଥିଲେ । ଉତ୍ତମ ଶିକ୍ଷା ଓ ଚରିତ୍ର ଗଠନ ଦିଗରେ ଛାତ୍ରଛାତ୍ରୀମାନଙ୍କୁ ଉପଯୁକ୍ତ ଶିକ୍ଷାଦେବାରେ ସେ ଅଗ୍ରଣୀ ଥିଲେ ।

ଏହା ବ୍ୟତୀତ ପଣ୍ଡିତ ରଥ ନିଜ ଭାଷା ଓ ଦେଶକୁ ଭଲ ପାଉଥିଲେ । ତାହା ତାଙ୍କ "କବିତା କଳାପ" ପୁସ୍ତକରେ ଉଲ୍ଲେଖ ରହିଛି ।

"ସ୍ୱଦେଶ ଉନ୍ନତି ଚିନ୍ତି ଦିନରାତି
ସାଧନେ ହୁଏ ତତ୍ପର,
ସ୍ୱଦେଶ ଗୌରବ କରି ଅନୁଭବ
ଜୀବନ ସାର୍ଥକ କର ।

୧୯୦୩ ମସିହାରେ ଭାରତର ବଡ଼ଲାଟ୍ ଲର୍ଡ କର୍ଜନ କଟକ ଆଗମନରେ ସେ ନିବେଦନ କରିଥିଲେ—"ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ" । ଏହା ଥିଲା ତାଙ୍କ ସ୍ୱଦେଶପ୍ରୀତିର ଉଦାହରଣ ।

"ଉତ୍କଳର ପାଇଁ ସ୍ୱତନ୍ତ୍ର ବିଧାନ
କରିଦିଅ ଲାଟ ପ୍ରାର୍ଥନା କାରଣ
ଗଞ୍ଜାମ, ସମ୍ବଲପୁରକୁ ଏଥର
କଟକ ସଙ୍ଗତେ ଆଣି ଯୋଗକର ।"

ଜଣେ ନିଷ୍ଠାପର ଦେଶ ସେବକ ରୂପେ ପଣ୍ଡିତ ଗୋବିନ୍ଦ ରଥ ଆଜୀବନ କର୍ତ୍ତବ୍ୟ ସମ୍ପାଦନ କରି ୧୯୧୮ ମସିହା ମେ ମାସ ୨୯ ତାରିଖ ଦିନ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କର ସେହି ମହାନ ବ୍ୟକ୍ତିତ୍ୱ ଓଡ଼ିଆ ଜାତିର ଚିର ନମସ୍ୟ ହୋଇ କାଳକାଳକୁ ଦିଗ୍‌ଦର୍ଶନ ଦେଇ ଆସୁଥିବ ।

ମାର୍ଫତ୍—ଶ୍ରୀ ହଳଧର ମହାପାତ୍ର,
କଲେଜ ରୋଡ଼, ବାଲ୍ମୀ,
କଟକ—୭୫୩୦୦୮ ।

# କାନ୍ତକବିଙ୍କ ଚଟକ ଚନ୍ଦ୍ରହାସ ଚମ୍ପୂ : ଏକ ବିମୁଗ୍ଧ ଦୃଷ୍ଟିପାତ

**ଶ୍ରୀ ଅନନ୍ତ କିଶୋର ଜେନା**

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର (୧୮୮୮-୧୯୫୩) ଓଡ଼ିଆ ସାହିତ୍ୟାକାଶରେ ଜଣେ ଉଜ୍ଜ୍ୱଳ ତାରକା । ଜୀବନରେ ସାହିତ୍ୟ ସାଧନା ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ସେ ଏକାଧାରରେ ଜଣେ କବି, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର, ପ୍ରାବନ୍ଧିକ ଓ ଅନୁବାଦକ । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚଳାଇ କବି ସକଳ ପ୍ରତିଭାର ଅଧିକାରୀ । ସାହିତ୍ୟର ରସ ସୃଷ୍ଟି କରିବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ତାଙ୍କର ସମଗ୍ର ସୃଷ୍ଟିରେ ଏକମାତ୍ର ହାସ୍ୟରସ ନିହିତ କହିଲେ ଚଳେ । ଏହି ହାସ୍ୟ ବ୍ୟଙ୍ଗ ରସ ଅନ୍ତରାଳରେ କବିଙ୍କର ଅଭିପ୍ରାୟ ଥିଲା, ସମାଜର ସମସ୍ତ ଆବର୍ଜନାକୁ ଲୋକ ଲୋଚନକୁ ଆଣି ତା'ର ଆଶୁ ପ୍ରତିକାର ବ୍ୟବସ୍ଥା କରିବା । ଏଥି ପାଇଁ ସେ କେଉଁଠି କେବେହେଲେ ଅଙ୍ଗୁଳି ନିର୍ଦ୍ଦେଶ କରି ସମାଜର ଦୋଷତ୍ରୁଟିକୁ ପଦାରେ ପକାଇ ନାହାନ୍ତି ବରଂ ସର୍ବଦା ଆଶ୍ରୟ ନେଇଛନ୍ତି ତାଙ୍କର ନିଜସ୍ୱ ସୃଷ୍ଟି ଓ ସୃଷ୍ଟିରେ ଥିବା ଚରିତ୍ରମାନଙ୍କରେ । ଏହି ଚରିତ୍ରମାନଙ୍କର ଦୋଷଦୁର୍ବଳତା ଓ ଅପରିଣାମଦର୍ଶିତା ଭିତରେ ରହିଛି ସମାଜର ଅଜସ୍ର ଆବର୍ଜନା ।

ବ୍ୟାସକବି ଫକିରମୋହନଙ୍କ ପରେ କାନ୍ତକବି ହିଁ ଓଡ଼ିଆ ସାହିତ୍ୟର ଯଥାର୍ଥ ହାସ୍ୟରସ ସ୍ରଷ୍ଟା । ତାଙ୍କର ଶାଣିତ ଲେଖନୀ ଆଧୁନିକ ସମାଜର କଳୁଷିତ ଦିଗକୁ ଉନ୍ମୋଚନ କରି ସମସ୍ତ ଦୁର୍ନୀତିକୁ ପଦାରେ ପକାଇ ଏକ ସୁସ୍ଥ ବାତାବରଣ ସୃଷ୍ଟି କରିବା ପାଇଁ ସର୍ବଦା ଚେଷ୍ଟିତ । କବିଙ୍କର ବ୍ୟଙ୍ଗ, ବିଦ୍ରୁପାତ୍ମକ ନୁହେଁ, ଉପାଦେୟ । ହସାଇ ହସାଇ ଦୁର୍ନୀତିର ମୁଖୋଶ ଉନ୍ମୋଚନ ହିଁ ତାଙ୍କ ସୃଷ୍ଟିର ଚରମ ଲକ୍ଷ୍ୟ । ସ୍ୱର୍ଗତ କବିଙ୍କ "ସପ୍ତରଥୀ" ରସ ସାହିତ୍ୟ ମଧ୍ୟରୁ ମାତ୍ର ଦ୍ୱାବିଂଶଟି "ଲାଳିକା" । "ଲାଳିକା"ର ଉଦ୍ଦେଶ୍ୟ: ଭାଷାଚାତୁରୀ ଦ୍ୱାରା ହାସ୍ୟରସର ଅବତାରଣା କରି ସାମାଜିକ ଦୁର୍ନୀତି ପ୍ରତି କଟାକ୍ଷ ପାତ କରିବା । ଓଡ଼ିଆ ଭାଷାରେ ହାସ୍ୟ କୌତୁକପୂର୍ଣ୍ଣ ଲେଖାର ଅଭାବ ଦେଖି କବି, କବିସୂର୍ଯ୍ୟ ବଳଦେବ ରଥଙ୍କର ବହୁ ପରିଚିତ କୃଷ୍ଣକାବ୍ୟ "କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ"ର ଅନୁକରଣରେ "ଚଟକ ଚନ୍ଦ୍ରହାସ ଚମ୍ପୂ" ରଚନା କରିଥିଲେ । ଏହି ପ୍ରସଂଗରେ କବି ନିଜେ କହନ୍ତି– "ଓଡ଼ିଆ ଭାଷାରେ ହାସ୍ୟ କୌତୁକପୂର୍ଣ୍ଣ ଲେଖାର ଅଭାବ ଦେଖି ଏହିପରି ସର୍ବଜନାଦୃତ ଓ କବିତ୍ୱ–ଗୌରବପୂର୍ଣ୍ଣ ସଙ୍ଗୀତାବଳୀର "ଲାଳିକା" (Parody) ରଚନା କରିବା ପାଇଁ ମୋର ସ୍ୱତଃ କୌତୁହଳ ଜନ୍ମିଲା । ତେଣୁ ଏହି ଦୁରୂହତର କାର୍ଯ୍ୟରେ ହସ୍ତକ୍ଷେପ କଲି"(୧) ।

କବିଙ୍କ ଭାଷାରେ "ନକଲର ଅକଲ ନାହିଁ" ॥ "କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ" ଯାହା ଓଡ଼ିଶାର ପୁରପଲ୍ଲୀରେ ଘରେ ଘରେ ସେୟାଃ ସେଭଳି ପ୍ରତିଭାପୂର୍ଣ୍ଣ ଓ ସର୍ବୋତ୍କୃଷ୍ଟ ଲେଖାର ଅନୁକରଣରେ ଲିଖିତ "ଚଟକ ଚନ୍ଦ୍ରହାସ ଚମ୍ପୂ"ର "ଚମ୍ପୂତ୍ୱ" ବିଷୟ କରିବା ଧୃଷ୍ଟତା ମାତ୍ର । କେବଳ ଆଲୋଚ୍ୟ ବିଷୟ ହେଉଛି, ଏହାର ହାସ୍ୟରସ ଓ ବର୍ଣ୍ଣନା ଚାତୁରୀରେ ପ୍ରସ୍ଫୁଟିତ ହୋଇଥିବା କଳାକୁଶଳତା । ମଧ୍ୟଯୁଗୀୟ ପରମ୍ପରା ଓ ଆଦର୍ଶରେ ରଚିତ "କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ"ରେ ଯେପରି ପୌରାଣିକ ଚରିତ୍ର ରାଧାକୃଷ୍ଣ ଓ ଲଳିତାଙ୍କ ସୃଷ୍ଟିରେ କବିସୂର୍ଯ୍ୟ ପାରଦର୍ଶିତା ଅର୍ଜନ କରିଥିଲେ, ଠିକ୍ ସେହିପରି "ଚଟକ ଚନ୍ଦ୍ରହାସ ଚମ୍ପୂ"ରେ କାନ୍ତକବି ଚଟକ ଚନ୍ଦ୍ର–ଆଧୁନିକ, ତସ୍ୟ ସଖା ମାଷ୍ଟର ମଙ୍କୁ ଏବଂ ମିସ୍ ନବୀନା ଓ ତସ୍ୟା ସଖୀ ମିସ୍ ସ୍ୱାଧୀନାକୁ ନେଇ "ଚମ୍ପୂ"ର କଳେବର ସୃଷ୍ଟି କରିଛନ୍ତି । "କ" ଠାରୁ "କ୍ଷ" ପର୍ଯ୍ୟନ୍ତ ଚଉତିଶାଛନ୍ଦରେ ଚଉତିଶଟି ବ୍ୟଞ୍ଜନବର୍ଣ୍ଣକୁ ନେଇ ରଚିତ ସମସ୍ତ ରସାତ୍ମକ ପଦ୍ୟ ଓ ଗଦ୍ୟ ରଚନାରେ ପ୍ରତିଫଳିତ ହାସ୍ୟରସ ଉକ୍ତ (ଲାଳିକା) ଚମ୍ପୂର ଆତ୍ମା କହିଲେ ଚଳେ । ଆଧୁନିକ ଶିକ୍ଷାପ୍ରାପ୍ତ ଯୁବକ–ଯୁବତୀ ଦ୍ୱାରା ଉଗ୍ର ଆଧୁନିକତା ନାମରେ କଳୁଷିତାକୁ ବରଣ କରିବାର ଏକ କୌତୁହଳପ୍ରଦ ଚିତ୍ରକୁ ହାସ୍ୟରସ ସହିତ ଉପସ୍ଥାପନା କରାଯାଇଛି । ମିସ୍ ନବୀନା ଓ ଚଟକଚନ୍ଦ୍ରଙ୍କର ପ୍ରେମ ବର୍ଣ୍ଣନା ଏହାର ଉପଜିବ୍ୟ ବିଷୟବସ୍ତୁ । ଉକ୍ତ ଆଧୁନିକ ପ୍ରେମ ବର୍ଣ୍ଣନାରେ ପ୍ରେମର ଏକ ବ୍ୟଙ୍ଗ ଚିତ୍ର ମିସ୍ ସ୍ୱାଧୀନାଙ୍କ ମୁଖରେ କବି ପ୍ରକାଶ କରିଛନ୍ତି :–

"ଘାସ ବାଡ଼ିକି ଛାଡ଼ି ମୁଣ୍ଡରେ ମୁହଁ ମାଡ଼ି
ଘୁଷୁରୀ ପରି ପାଣ୍ଡି ହୋଇଲୁରେ" ॥ଘ॥

ପୁନଶ୍ଚ–

"ଶଲ ଶଲ ହୋଇ ସୁଲି ଶାଢ଼ୀ ପରିଲୁରେ
ଶପରାକୁ ପାଞ୍ଚି ଟଙ୍କା ବୋଲି ଯା ଭାବିଲୁରେ
ଶାଙ୍କଠେଇଁ ଯାଇ ଯାଇ ଚିଟ୍ଠି ପଠାଇଲୁରେ
ଶରଦା ଭଜନେ ସୁପଡ଼ ବାଡ଼ ବଢାଇଲୁରେ" ॥ଶ॥

ପ୍ରେମ ଅନ୍ଧ । ସେ କେବେ କାହାର ବାରଣ ମାନେ ନାହିଁ । ନିମ୍ନଗାମୀ ନଦୀ ଯେପରି ସମୁଦ୍ରରେ ମିଶିବା ପାଇଁ ବ୍ୟଗ୍ର ହୋଇଥାଏ, ଠିକ୍ ସେହିପରି ପ୍ରେମରେ ଅନୁରକ୍ତ ହେଉଥିବା ପ୍ରେମିକ–ପ୍ରେମିକା ଜୀବନର ସ୍ୱାଦ ଅନୁଭବ କରିବା ପାଇଁ

ସମାଜର ସମସ୍ତ ବନ୍ଧନକୁ ଅତିକ୍ରମ କରି ମିଳନ କାମନା କରନ୍ତି । ମାତ୍ର କବିଙ୍କ ନାୟକ–ନାୟିକା ଚନ୍ଦ୍ରହାସ ଓ ମିସ୍ ନବୀନା ଉଗ୍ର ଆଧୁନିକତାର ବଶବର୍ତ୍ତୀ ହୋଇ ସମାଜକୁ ଖାତିରି ନକରି ଫ୍ରି ପ୍ରଣୟର ଫାଉଣ୍ଟେନ୍ ଫିଟାଇବାକୁ ଇଚ୍ଛୁକ । ତାଙ୍କର ବେଖାତିରପଣିଆକୁ କବି ସ୍ୱାଧୀନା କଣ୍ଠରେ କହିଛନ୍ତି :–

ଫୁସର ଫାସର ହେଲେ ଯେ ହୁଅନ୍ତୁ କେଆର ତହିଁକି ଥୋଡ଼ି
ଫୁଙ୍କି ଦେଇ ଏକା ଫୁଟିକି ମାରିଲେ ଫାକାସି ଯିବଟି ଉଡ଼ି ॥୩॥

ନାୟିକାର ରୂପ ବର୍ଣ୍ଣନାରେ କାନ୍ତକବି ଯେପରି ଆଧୁନିକ ଦୃଷ୍ଟିଭଙ୍ଗୀ ଓ ନିହାତି ଭାଷାର ଆଶ୍ରୟ ନେଇଛନ୍ତି; ତାହା ଏଠାରେ ଅନୁଧ୍ୟାନ କରିବା ବିଧେୟ । ଅତ୍ୟନ୍ତ ଆଧୁନିକ ଢଙ୍ଗ ଓ ଗଢଣର ନାୟିକା ଯେତେ ନିଜର କଦର୍ଯ୍ୟ ରୂପକୁ ପାଉଡ଼ର ଓ କସ୍ମେଟିକ୍ସର ଅନ୍ତରାଳରେ ଲୁଚାଇବାକୁ ଚେଷ୍ଟିତା ଥିଲେ ହେଁ, କବିଙ୍କ ଶାଣିତ ଦୃଷ୍ଟିରୁ ବରତି ଯାଇପାରି ନାହିଁ । ତେଣୁ ତଦ୍‌ଜନିତ ହାସ୍ୟ ଓ ବ୍ୟଙ୍ଗର ସ୍ୱରୂପକୁ କବି ମିସ୍ ସ୍ୱାଧୀନାଙ୍କ ଭାଷାରେ ପ୍ରକାଶ କରି ସଫଳ ହୋଇଛନ୍ତି :–

"ଗସ୍ତାଠାରୁ ମୋଟ ଗହୀର ତୋ ପେଟ
ଗନ୍ଧରି ଉଠୁଛି ସ୍ନେହ" ॥୫॥

ପୁନଶ୍ଚ–

ହେମିଣୀଙ୍କ ପରି ସଖି ହଗ ମେଲୁ କାଢ଼ି ଆଖି
(ତୋ) ହେକିକୁଟା ରୀତି ଦେଖି ଗଲି ଏକା ସରିରେ ॥୬॥

ସ୍ଥାନ ବିଶେଷରେ କାନ୍ତକବି "ଅମାବାସ୍ୟା ଇନ୍ଦୁ ପ୍ରିୟ ବନ୍ଧୁ" ॥୭॥ ବୋଲି ନାୟିକାକୁ ସମ୍ବୋଧନ ପୂର୍ବକ ଉପମା ଦ୍ୱାରା ତା'ର କଦର୍ଯ୍ୟ ରୂପକୁ ପ୍ରକାଶ କରିଛନ୍ତି ।

ସାଧାରଣତଃ ରୀତିକାବ୍ୟର ନାୟିକାର ଚକ୍ଷୁକୁ ହରିଣୀ କିମ୍ବା ଖଞ୍ଜନ ପକ୍ଷୀ ସହିତ ତୁଳନା କରାଯାଇଛି । ନାରୀର ନେତ୍ର ଏକ ଉଦ୍ଦୀପକ ଅଙ୍ଗ ଭାବେ ଗୃହୀତ ହୋଇ କବି ପ୍ରାଣକୁ ବିଗଳିତ କରି ସ୍ୱକୀୟ ମର୍ଯ୍ୟାଦାର ଅକଳନୀୟ ଶୋଭାଯୁକ୍ତ । ଏହି ବିଶିଷ୍ଟ ଦର୍ଶନୀୟ ଅଙ୍ଗର ଉଦ୍‌ଘୋଷନ ପାଇଁ କବି ବହୁ ଉପମାନ ବ୍ୟବହାର କରିଛନ୍ତି । ରୂପାଭିବ୍ୟକ୍ତି ପାଇଁ ପଦ୍ମ ଓ ମୀନ, ଆକୃତି ଓ ଚଞ୍ଚଳତା ପାଇଁ ଖଞ୍ଜନ, ବିରୀହଣ ପାଇଁ ମୃଗ ତଥା ନେତ୍ରର ପ୍ରେମାବେଦନ ପାଇଁ (କନ୍ଦର୍ପ) ଶର ଇତ୍ୟାଦି ଉପମାନଚୟ ମୁଖ୍ୟତଃ ପ୍ରଯୁଜ୍ୟ । ଯେନ୍ତୁଣି ଅଞ୍ଜନଯୁକ୍ତ ନେତ୍ରର ଆକର୍ଷଣ କେବଳ କବିଙ୍କ ବର୍ଣ୍ଣନାର ଚମତ୍କାରିତା ନୁହେଁ, ବରଂ ପାଠକର ପ୍ରାଣକୁ ରସୋତ୍ତୀର୍ଣ୍ଣ ଓ ମନୋଜ୍ଞ କବିଙ୍କ ରୂପ ପ୍ରଦାନ କରିଛି ।

ମାତ୍ର, କାନ୍ତକବିଙ୍କ ରଚନାରେ ରୀତିଯୁଗୀୟ ପ୍ରଣୟ–ମଧୁର ମାଦକତା ନାହିଁ । ଅଛି, ଅଭାବ ଅନଟନରେ ପ୍ରପୀଡ଼ିତା ନାରୀର ହତାଶାପୂର୍ଣ୍ଣ ପ୍ରତିଛବି । ଯୌବନର ବନ୍ଧୁର ବୟସକୁ ଅତିକ୍ରମ କରିଯାଇଥିବା ପ୍ରେମ–ପାଗଳିନୀ ଯୁବତୀର ମାତୃତ୍ୱ ପାଇଁ ଯେ କୌଣସି ଯୁବକ ନିକଟରେ ଆତ୍ମ ସମର୍ପଣ । ଏ କଥା, କାନ୍ତକବି କେଉଁଠି କେବେହେଲେ ସ୍ୱୀକାର କରି ନାହାନ୍ତି । କାରଣ ତାଙ୍କ ରଚନାର ହାସ୍ୟରସ –ପୂର୍ଣ୍ଣ ଦିଗଟି ଏତେ ସ୍ପଷ୍ଟ ଯେ, ପାଠକ ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଶାର ହୀନସ୍ୱାମନ୍ୟ ପ୍ରତିଛବି ପ୍ରତି ଦୃଷ୍ଟିପାତ କରିପାରେ ନାହିଁ । ତେଣୁ ଉପେନ୍ଦ୍ରଭଞ୍ଜଙ୍କ ରୀତିଯୁଗୀୟ ଓଡ଼ିଶାର ନାୟିକା ଖାଦ୍ୟାଭାବ ତଥା ମଳିନ ଆଧୁନିକତାର ଶିକାର ହୋଇ କାନ୍ତକବିଙ୍କ ଲେଖନୀରେ କୁରୂପା ହୋଇଯାଇଛି । ଏହି କଥାକୁ କବି ହାସ୍ୟପୂର୍ଣ୍ଣ ଭାବରେ କହିବନ୍ତି–

"ବିରାଡ଼ିଆ ଡ଼ୋଲାହେ
ଝୁଲା କୁଣ୍ଡୀ ଭଳି ହୋଇ ଭୋଳାରେ" ॥ ୩ ॥

ନାରୀ ଅବଗୁଣ୍ଠନବତୀ । ଲଜ୍ଜା ତା'ର ଭୂଷଣ । ସ୍ନେହ–ପ୍ରେମର ପରିପୂର୍ଣ୍ଣ ହୃଦୟା ମମତାମୟୀ ମୂର୍ତ୍ତିର ଆକର୍ଷଣରେ ସେ ସର୍ବଜନମନକୁ ମୋହିତ କରେ । ଜନନୀ–ଜାୟା–ଭଗିନୀ–କନ୍ୟା: ତା'ର ଏ ଚତୁର୍ବିଧ ରୂପରେ ସେ ଭାରତୀୟ ସଂସ୍କୃତିକୁ ସୀତା ସାବିତ୍ରୀର ଆଦର୍ଶରେ ସର୍ବଦା ଗଢ଼ି ତୋଳିଛି । କିନ୍ତୁ ଯେତେବେଳେ ବୈଦେଶିକ ସଭ୍ୟତା ଓ ସଂସ୍କୃତି ଆମ ଜନଜୀବନକୁ ଆକର୍ଷିତକଲା; ସେତେବେଳେ ସୀତା–ସାବିତ୍ରୀର ଆଦର୍ଶରେ ଅଳନ୍ଧ୍ର ଜମିବାକୁ ଆରମ୍ଭ କଲା । ଆଧୁନିକା ନାରୀ ତା'ର ନୈତିକ କର୍ମ ଓ ଆଦର୍ଶକୁ ଭୁଲି ନାଇଟ୍ କ୍ଲବରେ ଗାଉନ୍ ପିନ୍ଧି ନୃତ୍ୟ କରିବା ନିଶ୍ଚିତ ଭାବେ କବିଙ୍କର ଚକ୍ଷୁଶୀଳ ହୋଇଛି । ତେଣୁ ତତ୍‌କାଳୀନ ସମାଜର ଏ ବଦାଭ୍ୟାସ ପ୍ରତି କବି ତୀକ୍ଷ୍ଣ କଟାକ୍ଷପାତ କରି ସୁନ୍ଦର ଭାବରେ "ନବୀନା" ନାରୀର ଗୁଣ–କର୍ମ ରୀତିର ବର୍ଣ୍ଣନା କରିଛନ୍ତି–

"ସ୍ୱେର ଚପଟିଙ୍କ ମେଳେ ଗୁହାଗୁପ୍ତ ସଞ୍ଜବେଳେ ଚିନାବାଦାମର ଗୁଟଗୁପ୍ତ ଚକ୍ଷୁ ଚଉରସଗୁଲି ଚିହ୍ନିନାହୁଁ କେଉଁଭଳି ରୁଗ୍‌ଣ ଦୁଷିତା ସ୍ୱୟଂ ଆପୁରେ ଚଙ୍ଗରଙ୍ଗୀ ॥ ୪ ॥

ପୁନଶ୍ଚ, ମିସ୍ 'ନବୀନା'ର ଆଧୁନିକ ଫେଶନକୁ ଲକ୍ଷ୍ୟକରି–

"ଚରଣେ ଚୁପୁଲି ଚଟି ଚକ୍ଷୁରେ ଚଷମା ଆଣ୍ଟି
ଚଟକରେ ଗୁହିଁ ଦେଲୁ ହସିରେ, ଚିଲା ଆଖି" ॥ ୫॥

ବୋଲି କହିଛନ୍ତି ।

ଏତଦ୍‌ବ୍ୟତୀତ ସେ ଆଧୁନିକା ନାୟିକାକୁ ସ୍ୱୈରଣୀ, ଘିମିଛି ଦେହ, ବାବବୁଲି, ଖୋଲା ଆଖି, ରସଗୋଲାପରି ବର୍ତ୍ତୁଳ ବଦନା, ପାପୁଲି ଆଦି ଉପମାଯୁକ୍ତ ରୂପବର୍ଣ୍ଣନାରେ କବି ମସ୍ତୁଳତା ପୂର୍ଣ୍ଣ ହାସ୍ୟରସାତ୍ମକ ପ୍ରତିଛବି ପ୍ରଦାନ କରିଛନ୍ତି ।

କାନ୍ତକବି ଆଧୁନିକା ନାୟିକା ପରି ଆଧୁନିକ ନାୟକର ରୂପବର୍ଣ୍ଣନାରେ ମଧ୍ୟ ପାରଦର୍ଶିତା ଲାଭକରିଛନ୍ତି । କବିଙ୍କ ରଚନାରେ ଆଧୁନିକ ନାୟକ ରୀତିଯୁଗୀୟ ନାୟକପରି ଧୀରୋଦାତ୍ତ, ଧୀରଲଳିତ, ଉଚ୍ଚବଂଶଜ, ସଚ୍ଚରିତ୍ର ଓ ଶୌର୍ଯ୍ୟ–ବୀର୍ଯ୍ୟ ବିମଣ୍ଡିତ ନୁହେଁ । ଏଠାରେ କବିଙ୍କ ନାୟକ ଚଟକଚନ୍ଦ୍ର ଜଣେ ନେଫଡ଼ାବୋକା ଆଧୁନିକ ଛୋପରା ଦଳର ଅଧିନାୟକ । ଶିକ୍ଷାଦୀକ୍ଷା ବିବର୍ଜିତ ଶଠମାନଙ୍କର ନେତା । ଆଧୁନିକ ସେହିପରି ତା'ର ବେଶ ପୋଷାକ ଓ ଠାଣିମାଣି । ଆଧୁନିକ ନାୟକର ଉବଡ଼ଖିଆ ଚେହେରା, ରୂପ, ରସ ଓ ଗୁଣ ରୀତି

ଶାରୀରିକ କୁରୂପ ବର୍ଣ୍ଣନାରେ କବିଙ୍କର ସଫଳତାପୂର୍ଣ୍ଣ ବାକ୍‌ଚାତୁର୍ଯ୍ୟ ବେଶ୍ ଉପଭୋଗ୍ୟ–

କୁକୁଡ଼ ଚୂଳିଆ ଟେରି କୁଞ୍ଚା କନ୍ଦର୍ପ କତୁରୀ
XX XX XX
କଳେ ବିଡ଼ିଟିଏ ଚାବି କଟମଟ କରି ଆଖି
ବାହୁଥିଲା ଧୂଆଁ କି ରୀତିରେ ॥ ୨ ॥

ଆଧୁନିକ ଯୁବକମାନଙ୍କର ଚରିତ୍ର ପ୍ରତି କବିଙ୍କର କଟୁ କଟାକ୍ଷ ପାତ ବେଶ୍ ମନୋଜ୍ଞ । ତତ୍‌କାଳୀନ ସମାଜରେ, ମଫସଲୀ ଝିଅମାନଙ୍କର ରୂପଗୁଣ ସୌନ୍ଦର୍ଯ୍ୟ ପ୍ରତି ବିମୁଖ ହୋଇ, ବିନାକାର୍ଯ୍ୟରେ କଲେଜରେ ଟହଲମାରି, ମହାକାଳ ଫଳ ପରି ସୁନ୍ଦରୀ ଆଧୁନିକା ନବ୍ୟଶିକ୍ଷିତା କଲେଜ ପଢ଼ୁଆ, ଆଖିରେ ଚଷମା ପିନ୍ଧି ମୁହଁରେ ପାଉଡ଼ର ମାଖିଥିବା ଝିଅମାନଙ୍କୁ ପ୍ରେମଭିକ୍ଷା କରି ବିଫଳ ହୋଇଥିବା ନବ୍ୟଶିକ୍ଷିତ ଯୁବକଗଣଙ୍କୁ କବି ଇଙ୍ଗିତ କରି କହିଛନ୍ତି–

"ନୁଆ ନଟପଟିଆ ଲମ୍ପଟ ହେ ନାହିଁକି ଶ୍ରୀଅଙ୍ଗ ସୁଖ
ନିହାତି ନିସ୍ତେଜ ଦିଶୁଛି ଆଜି କଲେଜ ନେଫଡ଼ା ମୁଖ ।
ନାକରୁ ସିପାଣି ବହେ କଞ୍ଚାପାଣି ମନି ହୋଇ ସଡସଡ ॥୩॥

ରୀତିଯୁଗୀୟ ନାୟକର ପ୍ରଶାନ୍ତ ଓ ପ୍ରାଜ୍ଞ ମୁଖମଣ୍ଡଳରେ ଶୋଭା ଯେପରି କବିମାନଙ୍କ ଲେଖନୀରେ ଜୀବନ୍ତରୂପ ଧାରଣ କରିଥିଲା; ତାହା ଆଧୁନିକତାର ଉଗ୍ରରୂପ ନିକଟରେ ମଳିନ ପଡ଼ିଯାଇଛି । ଏଠାରେ କାନ୍ତକବିଙ୍କ ନାୟକ ଚଟବଚନ୍ଦ୍ର ହେଉଛି ତା'ର ପ୍ରକୃଷ୍ଟ ଉଦାହରଣ । ହତୋଭାଗି ଆଧୁନିକ ହିପି ଯୁଗର ଯୁବକ ମୁଖରେ ବସନ୍ତରୋଗ ଜନିତ ଚିହ୍ନ କବିଙ୍କ ତୀକ୍ଷ୍ଣ ଦୃଷ୍ଟିରୁ ବରତି ଯାଇ ପାରିନି । ତେଣୁ କବି ଲେଖିଛନ୍ତି–

"ହଲାଉଛି ହସର ବଦନ ଗୋ
ହାଡ଼ଫୁଟି ଚିହ୍ନ ଗୋଟି ଗୋଟି ଶୋଭାବନ XXX
ହିଁ ହିଁ କରି ହସିଦେଲେ ଦିଶଇ ରଦନ ॥ ୪ ॥

ଆଧୁନିକ ସଭ୍ୟତାର ମଦ୍ୟପାନ ଥିଲା ସମ୍ଭ୍ରାନ୍ତର ପରିଚାୟକ । ବାବୁପଣିଆ ଓ ବଡ଼ଲୋକିର ମାପକାଠି ଥିଲା, କ୍ଲବରେ ରାତି ପରେ ରାତି ଅନିଦ୍ରା ହୋଇ ମଉଜ–ମଜଲିସ୍‌ରେ ଦିନକାଟିବା ଓ ନୃତ୍ୟ କରିବା । ଏହା ବୈଦେଶିକ ସଭ୍ୟତାରେ ଜୀବନଯାପନ ଶୈଳୀର ଏକ ଅଙ୍ଗ ହୋଇପାରେ, ମାତ୍ର କବି ଅନୁଭବ କରିଛନ୍ତି ଯେ, ଏହା କେବଳ ଉତ୍କଳୀୟ ସଂସ୍କୃତିର ନୁହେଁ, ଭାରତୀୟ ସଭ୍ୟତାର ମଧ୍ୟ ପରିପନ୍ଥୀ । ତେଣୁ ଆଧୁନିକ ସଭ୍ୟତାର ସ୍ରୋତରେ ଭାସିଯାଇ ଚିଆଡ଼ସତରେ ଜୀବନକୁ ଉପଭୋଗ କରିବା ପାଇଁ ବସିଥିବା ଯୁବକମାନଙ୍କୁ କବି ଶାଣିତ ବ୍ୟଙ୍ଗ ଭାଷାରେ କହିଛନ୍ତି–

"ନିଦ ନାହିଁକିରେ ନିଶିଁ ନୟନରେ ନାଲି ନାଲି ଦିଶେ ଅତି
ନିଶା ଖୋରପରି ନଇଁ ନଇଁ କରି କରୁଛ
ନର୍ତ୍ତୀର ରତି" ॥୬॥

ପୁନଶ୍ଚ ନାଇଟ୍‌କ୍ଲବରେ ରାତି ଉଜାଗର ରହି ନିଶା ସେବନ କରି ଘରକୁ ଫେରୁଥିବା ଯୁବକମାନଙ୍କର ଚରିତ୍ର ସଂହାର କରି କବି କହିଛନ୍ତି–

ନେଉଳମୁହାଁ କ୍ଷେତ୍ର ନିପଟ ନିଶାଖୋର
ନଛୋଡ଼ବନ୍ଧା ତା'ର ସ୍ୱଭାବଟି
ନଗର ଉଦ୍ୟାନ୍ ପାଳି ଅଟେ ସେ..... ॥ ୭ ॥

ସେହିପରି ବନା କାରଣରେ ଚକ୍ଷୁରେ ଚଷମା ପରିଧାନ କରି ନିଜକୁ ଆଧୁନିକ ଫେଶନର କର୍ଣ୍ଣଧାର ବୋଲି ପରିଚୟ ପ୍ରଦାନ କରୁଥିବା ଯୁବକମାନଙ୍କୁ କବି "ସମ୍ପିଛି ଚଷମା ଚକ୍ଷେ ପଟେ କି ସେ କଣା" ॥୮॥ର ଉପମା ପ୍ରଦାନ କରିଛନ୍ତି । କେବଳ ସେତିକି ନୁହେଁ କବି ଆଧୁନିକ ଯୁବକ (ନାୟକ)ର ରୂପଗୁଣ ବର୍ଣ୍ଣନାରେ ଡୋଡ଼ିମୁହାଁ, ଡଉକା ଟୋକା, ଛଣିମୁହାଁ ନଳିଗୋଡ଼, ଟାଉଟର, ଟାକୁଆଗାଲ, ଡ଼ାହାଣା, କଳାଭାଲୁ, ଲୁଞ୍ଚାଲୁଆ, ଚିମାଆଖି, ଭାଲୁଭାଲୁଆ ମୁହଁ, ଭାଙ୍ଗ ଭଷିଲା ଭଳି ଭ୍ରମର ଡୋଳା, ଶଠବ୍ଭଳ ଶାର୍ଦ୍ଦୁଳ ଇତ୍ୟାଦି ବିଶେଷଣ ଓ ଉପମା ପ୍ରୟୋଗ କରି ହାସ୍ୟୋଦ୍ଦିପକ ପରିବେଶ ସୃଷ୍ଟି କରିଛନ୍ତି ।

କାନ୍ତକବିଙ୍କ ରଚନାରେ ଭାଷା ଅତ୍ୟନ୍ତ ହାସ୍ୟୋଦ୍ଦିପକ; ଯାହାକି ତାଙ୍କର ସୃଷ୍ଟିକୁ ଅତ୍ୟନ୍ତ ମନୋରମ କରି ଗଢ଼ିତୋଳିଛି । ପ୍ରତ୍ୟେକ ଗୀତର ପଦ, ପାଦ, ଏପରିକି ତାଙ୍କର ଗଦ୍ୟାଂଶରେ ମଧ୍ୟ ଭାଷାର ବ୍ୟଙ୍ଗାତ୍ମକ ଶୈଳୀ ବିଦ୍ୟମାନ । ରଚନାର ସରଳ ସୁନ୍ଦର ବର୍ଣ୍ଣନା ପାଇଁ ସେ ଯଥେଷ୍ଟ ଶବ୍ଦଚୟନ କରିଛନ୍ତି । ପ୍ରାନେର ଧନ, ଦିମାକ, କୁର୍ତ୍ତୀ, କସୁର, ମାଫ୍, ଧୋତି, ବକ୍‌ସିସ୍, ପରବାୟ, ଚେହ୍ଲୁ, ଫାଉଣ୍ଟେନ, ଫିଟ୍, ନାଷ୍ଟି(Nasty) ଫ୍ରେଣ୍ଡସିପ୍ ଇତ୍ୟାଦି ବଙ୍ଗଳା, ପାର୍ସି, ଆରବିକ୍ ଓ ଇଂରାଜୀ ଶବ୍ଦ ପ୍ରୟୋଗରେ ହାସ୍ୟରସ ଅତୁଟ ରହିବା ସଙ୍ଗେ ସଙ୍ଗେ ବର୍ଣ୍ଣନାର କମନୀୟତା ସୃଷ୍ଟି ହୋଇଛି । କବିଙ୍କର ମୁଖ୍ୟଉଦ୍ଦେଶ୍ୟ ଥିଲା ହାସ୍ୟ–ବ୍ୟଙ୍ଗରସ ପୂର୍ଣ୍ଣଲାଳିତ୍ୟର ସୃଷ୍ଟି । ତେଣୁ ରଚନାର ସାବଲୀଳତା ପାଇଁ ବିଭିନ୍ନ ଉଧାର ଶବ୍ଦ ପ୍ରୟୋଗ କରିଥିଲେ ହେଁ ଏହାର ରସପୂର୍ଣ୍ଣ ଦିଗଟି ଅକ୍ଷୁର୍ଣ୍ଣ ରହିଛି ।

କବି କ୍ରାନ୍ତଦର୍ଶୀ । ଅତୀତ ଓ ଭବିଷ୍ୟତକୁ ନିଜର ତୃତୀୟ ନୟନରେ ସନ୍ଦର୍ଶନ କରି ବର୍ତ୍ତମାନକୁ କିଛି ଉପଦେଶ ଦେବା ତାଙ୍କ ଧର୍ମ । ଏ କ୍ଷେତ୍ରରେ ସେ କେବଳ ଜଣେ ସାହିତ୍ୟ ସ୍ରଷ୍ଟା ନୁହନ୍ତି ପରନ୍ତୁ ଜଣେ ଦ୍ୱିତୀୟ ବ୍ରହ୍ମା । କବି ନିଜର ରୁଚି ଓ ପସନ୍ଦାନୁସାରେ ତା'ର ସ୍ୱପ୍ନିଳ ଶାନ୍ତିପୂର୍ଣ୍ଣ ସମାଜକୁ ଭବିଷ୍ୟତରେ ସୁଗଠିତ କରିବାକୁ ସର୍ବଦା ତତ୍ପର । ଏଣୁ କାନ୍ତକବି ତାଙ୍କର କବିଧର୍ମକୁ ଭୁଲି ନଯାଇ, ସମାଜରେ ଉଗ୍ର ଆଧୁନିକତାର ଅବାଧ ପ୍ରବେଶ ତଥା ଆଧୁନିକ ଯୁବକ–ଯୁବତୀମାନଙ୍କ ଦ୍ୱାରା ତା'ର ଅନ୍ଧାନୁସରଣର କୁପରିଣତି ବିଷୟରେ ସୂଚେଇ ଦେଇ ଲେଖିଛନ୍ତି–

"ଖାଲିକୁହା ସିନା ହୋଇବ ସାର
ଝରିବ ଆଖିରୁ ଲୋତକ ଧାର ।
ଲୁଙ୍ଗୁଛାଡ଼ି ଏବେ ମୋ ବୋଲକର
ଭୁଡା କଥାକୁ ତୁ ମନେ ନଧର ॥ ୯ ॥

ମାତ୍ର ଉଗ୍ର ଆଧୁନିକତା ଯେପରି ପାଣିସୁଅ ପରି ଆମ ସମାଜରେ ମାଡ଼ିଆସୁଥିଲା; କାଳେ ଆଧୁନିକ ନବ୍ୟ ଶିକ୍ଷିତ ଯୁବକ–ଯୁବତୀଙ୍କ ସମାଜ କବିଙ୍କ ଉପଦେଶକୁ ଘାସଫୁଲପରି ପାଦରେ ଆଡ଼େଇ ଦେଇ ଖାରଜ କରିଦେବେ–ଏହି ଆଶଙ୍କାରେ କବି ଆଧୁନିକା ଯୁବତୀମାନଙ୍କୁ ନେହୁରା ହୋଇଛନ୍ତି । କବିଙ୍କ ଭାଷାରେ–

"ନିୟମ ଦେଉଛି ନେହୁରା ହେଉଛି
  ନିସ୍ତୁଣା (Nusty) ଟୋକାଙ୍କ ମେଳେ
ନିତି ନିଶାକାଳେ ନିଛାଟିଆ ବେଳେ
  ନବୁଲିବ କେତେବେଳେ" ॥ ୬ ॥

ପୁନଶ୍ଚ, ଯୁବକମାନଙ୍କୁ କବି କହିଛନ୍ତି–
"ନିଲଠାଙ୍କ ଭଳି ନାକକୁ ଟେକି ଚଳି ନହେବଟି ନରପର
ନବ୍ୟା ନାଗରୀଙ୍କ ନିରେଖି ଡରିଲି ହେବ
ନିମୋନିଆଜର" ॥୭॥

କବି ତାଙ୍କର ରଚନାର ଅଙ୍ଗେ ଅଙ୍ଗେ ଯେପରି ହାସ୍ୟୋଦ୍ଦୀପକ ବର୍ଣ୍ଣନାର ଫୁଆର ସୃଷ୍ଟି କରିଛନ୍ତି; ଏଠାରେ ସମସ୍ତ ଉଦ୍ଧାର କରିବା ଅସମ୍ଭବ । ତାଙ୍କର ସମସ୍ତ ସୃଷ୍ଟି ଯେ ରସପୂର୍ଣ୍ଣ; ତାହା କବି ନିଜେ ଖୁଲେଇ ଦେଇ କହିଛନ୍ତି–

"ଆଶା ପୋଷିଲେ ମନେ ରମାଇବାକୁ ଜନେ
ଭାଷ୍ୟ ନାହିଁ ବଦନେ" ୮॥

ତେଣୁ ଉମେର ରସ ବାହାର କରିବା ଅର୍ଥ, କାନ୍ଥରେ ଚୋଡ଼ି ପିଟିବା ପରି କର୍ମ ହେବ । କବିଙ୍କର କଥା କଥାକେ ଆଧୁନିକ ଯୁବକ–ଯୁବତୀଙ୍କର ଢଙ୍ଗଢାଙ୍ଗ ଓ ବେଶ–ଫେଶନ ପ୍ରତି ଏକ ଚତୁର ବ୍ୟଙ୍ଗ ଏହି "ଚଟକ ଚନ୍ଦ୍ର ଦାସ ତତ୍ତ୍ୱ" ।"

ଏକଦା କବିଙ୍କର ଏହ ହାସ୍ୟରସ ପୂର୍ଣ୍ଣ ବ୍ୟଙ୍ଗାତ୍ମକ ରଚନା ସନ୍ଦର୍ଶନ କରି ଭବିଷ୍ୟବାଣୀ କରିଥିଲେ–ଲେଖିଯାଅ । ଲେଖିଯାଅ, ସୁନା ରହିଯିବ ଖାଦ ପାଉଁଶ ହୋଇଯିବ କାଳାଗ୍ନିରେ ॥୯॥ ପ୍ରକୃତିରେ କବିଙ୍କର ନଶ୍ୱର ଶରୀର କାଳଗର୍ଭରେ ଲୀନ ହୋଇଯାଇଥିଲେ ହେଁ ଅଧୁନା ତାଙ୍କର ଆତ୍ମା ପ୍ରତ୍ୟେକ ସାହିତ୍ୟ ରସ–ପ୍ରେମୀଙ୍କ ପାଇଁ ହୋଇଛି, ଅମର ଓ ପୂଜ୍ୟ

ପାଦଟୀକା :

(୧) କାନ୍ତ ସାହିତ୍ୟମାଳା–୧ମଖଣ୍ଡ–୧୯୬୮/ଓଡ଼ିଶା ବୁକ୍ ଏମ୍ପୋରିୟମ୍–ପୃ:–୨୬୨ ।
(୨) 'ଘ' ଗୀତ–କାନ୍ତ ସାହିତ୍ୟମାଳା ୧ମଖଣ୍ଡ–ଓଡ଼ିଶା ବୁକ୍ ଏମ୍ପୋରିୟମ୍/ପୃ:–୨୬୪ ।
(୩) 'ଖ' ଗୀତ–ତତ୍ରୈବ–ପୃଷ୍ଠା–୨୬୩ ।
(୪) 'ଫ' ଗୀତ–ତତ୍ରୈବ–ପୃଷ୍ଠା–୨୭୦ ।
(୫) 'ଫ' ଗୀତ–ତତ୍ରୈବ–ପୃଷ୍ଠା–୨୭୦ ।
(୬) 'ଗ' ଗୀତ–ତତ୍ରୈବ–ପୃଷ୍ଠା–୨୬୩ ।
(୧) ଗୀତ–କାନ୍ତ ସାହିତ୍ୟମାଳା–୧ମଖଣ୍ଡ–ଓଡ଼ିଶା ବୁକ୍ ଏମ୍ପୋରିୟମ୍–ପୃ:–୨୬୭ ।
(୨) 'ଗ' ଗୀତ–ତତ୍ରୈବ–ପୃଷ୍ଠା–୨୬୬ ।
(୩) 'ଢ' ଗୀତ–ତତ୍ରୈବ–ପୃଷ୍ଠା–୨୬୦ ।
(୪) 'ବ' ଗୀତ–ତତ୍ରୈବ–ପୃଷ୍ଠା–୨୬୭ ।
(୧) 'ଚ' ଗୀତ–କାନ୍ତ ସାହିତ୍ୟମାଳା ୧ମଖଣ୍ଡ–ଓଡ଼ିଶା ବୁକ୍ ଏମ୍ପୋରିୟମ୍–ପୃ:–୨୬୭ ।
(୨) 'ଙ୍କ' ଗୀତ–ତତ୍ରୈବ–ପୃଷ୍ଠା–୨୬୩ ।
(୩) 'ଡ' ଗୀତ–ତତ୍ରୈବ–ପୃଷ୍ଠା–୨୬୪ ।
(୪) 'ଦ' ଗୀତ–ତତ୍ରୈବ–ପୃଷ୍ଠା–୨୬୫ ।
(୧) 'ଡ' ଗୀତ–କାନ୍ତ ସାହିତ୍ୟମାଳା ୧ମଖଣ୍ଡ– ଓଡ଼ିଶା ବୁକ୍ ଏମ୍ପୋରିୟମ–ପୃଷ୍ଠା–୨୬୪ ।
(୨) 'ନ' ଗୀତ–ତତ୍ରୈବ–ପୃଷ୍ଠା–୨୬୨ ।
(୩) 'ଥ' ଗୀତ–ତତ୍ରୈବ–ପୃଷ୍ଠା–୨୬୩ ।
(୪) 'ଞ' ଗୀତ–ତତ୍ରୈବ–ପୃଷ୍ଠା–୨୬୬ ।
(୫) 'ଲ' ଗୀତ–ତତ୍ରୈବ–ପୃଷ୍ଠା–୨୬୪ ।
(୧) 'ଟ' ଗୀତ–କାନ୍ତ ସାହିତ୍ୟମାଳା ୧ମଖଣ୍ଡ–ଓଡ଼ିଶା ବୁକ୍ ଏମ୍ପୋରିୟମ୍–ପୃ:–୨୬୪ ।
(୨) 'ଛ' ଗୀତ–ତତ୍ରୈବ–ପୃଷ୍ଠା–୨୬୬ ।
(୩) ମୁଖବନ୍ଧ(କାନ୍ତକବି)–ତତ୍ରୈବ–ମୁଖବନ୍ଧ ପୃଷ୍ଠା–ଝ ।

ଅଧ୍ୟାପକ,
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,
ସରକାରୀ ମହାବିଦ୍ୟାଳୟ,
ଫୁଲବାଣୀ ।

# ଦନ୍ତପୁର–ପାଲୁର ବନ୍ଦର : ଏକ ଅବଲୁପ୍ତ ଐତିହ୍ୟ

ଅଶୋକ କୁମାର ସାହୁ

ଐତିହାସିକ ରମ୍ଭା ଓ ହୁମ୍ମା ନିକଟବର୍ତ୍ତୀ ବଙ୍ଗୋପ ସାଗର ଉପକୂଳସ୍ଥ 'ପାଲୁର' ବନ୍ଦର ଏକ ଅବଲୁପ୍ତ ଐତିହ୍ୟ । କଳିଙ୍ଗର ସାଧବ ପୁଅ ବଣିକ ପୁଅମାନଙ୍କର ଏହା ଥିଲା ଏକ ପ୍ରଧାନ ବାଣିଜ୍ୟ କେନ୍ଦ୍ର । ଖ୍ରୀ: ପୂ: ୫ମ/୬ଷ୍ଠ ଶତାବ୍ଦୀରେ ସୁଦୂର ସିଂହଳ, ଜାଭା, ସୁମାତ୍ରା, ବାଲି ଓ ବୋର୍ଣ୍ଣିଓ ଦ୍ୱୀପ ସହ ଏଠାରୁ ସାମୁଦ୍ରିକ ଯାତାୟତ ପଥ ସୁଗମ ଥିଲା । ଅନେକ ଦିନ ଧରି ଏହା ଏକ ସମୃଦ୍ଧିଶାଳୀ ନଗରୀରେ ପରିଣତ ହୋଇଥିଲା ।

ଭଗ୍ନ ଅଟ୍ଟାଳିକା, ଗଡ଼ଖାଇ, ପ୍ରାଚୀର, ଜରାଜୀର୍ଣ୍ଣ ମନ୍ଦିର ଓ ଭଗ୍ନାବଶେଷ ଏହାର ସ୍ମାରକୀ । ତାହା ବର୍ତ୍ତମାନ 'ପାଲୁର ଗଡ଼' ଭାବେ ପରିଚିତ । ଏଥି ସନ୍ନିକଟ ଦୁଇଟି ଶିବ ମନ୍ଦିରରେ କାର୍ତ୍ତିକ ପୂର୍ଣ୍ଣିମାରେ ଯାନିଯାତ୍ରା ଓ ବୋଇତ ବନ୍ଦାଣ ଉତ୍ସବ ପାଳିତ ହୋଇ କେବଳ ହଜି ଯାଇଥିବା ସଂସ୍କୃତି ଓ ପରମ୍ପରାକୁ ମନେପକା ଯାଉଛି । ସାଧବ ଝିଅ ତଅପୋଇ ସମ୍ପର୍କିତ ଲୋକ କଥା ଓ ଖୁଦୁରୁକୁଣୀ ଓଷାବ୍ରତ ପାଳନ ଏ ଅଞ୍ଚଳର ଜନପ୍ରିୟ ପରମ୍ପରା ।

ଭୌଗୋଳିକ 'ଟଲେମୀ' ଓ ପ୍ରଫେସର 'ସିଲ୍‌ଭାଇନ୍ ଲେଭୀ'ଙ୍କ ମତରେ "ଏହା ଚିଲିକା ହ୍ରଦ ନିକଟବର୍ତ୍ତୀ ରମ୍ଭା ଓ ହୁମ୍ମା ମଧ୍ୟବର୍ତ୍ତୀ ଋଷିକୁଲ୍ୟା ନଦୀର ମୁହାଣରେ ଅବସ୍ଥିତ 'ପାଲୁର' ବନ୍ଦର"(୧) × × କାରଣ ତେଲୁଗୁ ଭାଷାରେ 'ପଲ୍'ର ଅର୍ଥ 'ଦନ୍ତ' ଓ 'ଉର'ର ଅର୍ଥ 'ନଗର' ବା 'ପୁର' । ଏଣୁ 'ପାଲୁର'ର ପୂର୍ବ ନାମ 'ଦନ୍ତପୁର' । କଳିଙ୍ଗରେ ସେତେବେଳେ ତେଲୁଗୁ ଭାଷାର ପ୍ରଭାବ ବେଶ୍ ଥିଲା । ଏଥି ଅନ୍ତର୍ଭୁକ୍ତ 'କଙ୍ଗୋଦ' ମଣ୍ଡଳର ସୀମା କେବଳ ଦକ୍ଷିଣରେ ଋଷିକୁଲ୍ୟା ମୁହାଣ ପର୍ଯ୍ୟନ୍ତ ଥିଲା । ଯେଉଁ ମଣ୍ଡଳରେ କି 'ଦନ୍ତପୁର' ଅବସ୍ଥିତ ।

ଐତିହାସିକ ଷ୍ଟେରଲିଂଙ୍କ ମତରେ ଖ୍ରୀ: ପୂ: ୩ୟ ଶତାବ୍ଦୀରେ ଉତ୍କଳର 'ବ୍ରହ୍ମଦତ୍ତ'ଙ୍କ ଜାମାତା ଉଜ୍ଜୟିନୀର 'ଦନ୍ତ କୁମାର', ବୁଦ୍ଧଙ୍କ ପବିତ୍ର ଦନ୍ତାବଶେଷକୁ ନେଇ କଳିଙ୍ଗର ପ୍ରାଚୀନ 'ଦନ୍ତପୁର'ଠାରୁ ସିଂହଳକୁ ନେଇ ସେଠାରେ ସ୍ଥାପନ କରିଥିଲେ । ଏହି ଦନ୍ତପୁର ସାମ୍ପ୍ରତିକ ରମ୍ଭା–ହୁମ୍ମା ମଧ୍ୟସ୍ଥ 'ପାଲୁର' ବ୍ୟତୀତ ଆଉ କିଛି ନୁହେଁ ବୋଲି ସେ ଦୃଢ଼ ମତପୋଷଣ କରିଛନ୍ତି ଡ଼ଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ– ଓଡ଼ିଶାର ପର୍ବପର୍ବାଣୀ, ଓଷାବ୍ରତ ଓ ଯାନିଯାତ୍ରା– ଉତ୍କଳ ପାଠକ ସଂସଦ) ।

ପୁନଶ୍ଚ 'ପାଲି' ଶବ୍ଦରୁ 'ପାଲୁର' ଅପଭ୍ରଂଶ ହୋଇ ନାମିତ ହୋଇଛି । ପାଲୁର ଥିଲା ଏକ 'ପାଲ–ଗୋଦାମ' । ଜାହାଜରେ ବ୍ୟବହୃତ ସେ ପାଲ ଏଠି ସଂଗୃହୀତ ହୋଇ ରହୁଥିଲା । କଳିଙ୍ଗ ବିଜେତା ଅଶୋକ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇ ଏଇ 'ଦନ୍ତପୁର' ବା ପାଲୁର ବନ୍ଦର ବାଟେ ତାଙ୍କ ପୁତ୍ର ମହେନ୍ଦ୍ର ଓ କନ୍ୟା ସଙ୍ଘମିତ୍ରାଙ୍କୁ ବୌଦ୍ଧ ଧର୍ମ ପ୍ରଚ୍ଚାର ଓ ପ୍ରସାର ପାଇଁ ପଠାଇଥିଲେ । ମଗଧ ସମ୍ରାଟ ଅଶୋକଙ୍କ ବିଶାଳ ସାମ୍ରାଜ୍ୟର ଶାସନ ଶୃଙ୍ଖଳା ପାଇଁ ୨ଟି ରାଜଧାନୀ (୧–ତୋଶାଳୀ, ୨–ଦନ୍ତପୁର) ସୃଷ୍ଟି କରାଯାଇଥିଲା । 'ଦନ୍ତପୁର' ରାଜଧାନୀର ମୁଖ୍ୟ ଥିଲେ 'ସମାପ'ର 'ମହାପାତ୍ର'(୩) ।

ପ୍ରଫେସର ଜଗନ୍ନାଥ ପଟ୍ଟନାୟକଙ୍କ ମତରେ ଓଡ଼ିଶା ଓ ସିଂହଳ ମଧ୍ୟରେ ଧାର୍ମିକ, ରାଜନୈତିକ ଓ ବୈବାହିକ ସମ୍ପର୍କ ସ୍ଥାପିତ ହୋଇଥିବାର ଭୂରସୀ ପ୍ରମାଣ ରହିଛି । "ଜଉଗଡ଼ରୁ ସଂରକ୍ଷିତ ଅଳଙ୍କାର ଓ ପ୍ରତିମାମାନଙ୍କ ଭିତରୁ ଜାହାଜର ଲଙ୍ଗରର ରୂପ ଚିତ୍ରିତ । ଖ୍ରୀ: ପୂ: ୭୫ ଅବ୍ଦରେ ଓଡ଼ିଶାର ଲୋକେ 'ଜାଭା'ଠାରେ ଉପନିବେଶ ସ୍ଥାପନ କରିଥିଲେ । ମିଷ୍ଟର ଭି. ଏ. ସ୍ମିଥ୍ ତାହାଙ୍କର Catalogue of Coins in the Indian Musuem, Calcutta ପୁସ୍ତକରେ ଏହି ପ୍ରକାର ମୁଦ୍ରାଗୁଡ଼ିକର ଉଲ୍ଲେଖ କରିଛନ୍ତି"(୪) (ତାରିଣୀ ଚରଣ ଗ୍ରନ୍ଥାବଳୀ) ।

ରମ୍ଭା ନଗରୀ ଓ ଗଞ୍ଜା ନଗରୀ ଦୁଇଟି ସମୃଦ୍ଧଶାଳୀ ଥିଲା, ଯାହା 'ପାଲୁର ବନ୍ଦର' ଦୁଇପଟେ ଅବସ୍ଥିତ । ଗୋଟିଏ ପଟେ ଚିଲିକା, ଆରପଟେ ଋଷିକୁଲ୍ୟା ମୁହାଣ ଓ ସମୁଦ୍ର । ଯାହି ଭିତରେ 'ପାଲୁର ବନ୍ଦର'ର ଅବସ୍ଥିତି । ଏ ସମୁଦାୟ ଭୂଖଣ୍ଡ ସେତେବେଳେ ବୃହତ୍ 'ପାଲୁର' ବନ୍ଦର ରୂପେ କାର୍ଯ୍ୟ କରୁଥିଲା ।

'ଦନ୍ତପୁର' ରାଜ ପରିସର ମଧ୍ୟରେ କଳିଙ୍ଗରାଜ 'ବ୍ରହ୍ମଦତ୍ତ' ନିର୍ମିତ ମଣିମାଣିକ୍ୟ ଖଚିତ ବୁଦ୍ଧ ଦନ୍ତ ରକ୍ଷିତ ବୌଦ୍ଧଚୈତ୍ୟ ମହାକାଳର ଦନ୍ତାଘାତରେ ଧ୍ୱଂସବିଧ୍ୱସ୍ତ । ଖ୍ରୀ: ପୂ: ୩ୟ ଶତାବ୍ଦୀରେ ବ୍ରାହ୍ମଣ୍ୟ ଧର୍ମ ପ୍ରତିଷ୍ଠିତ ହେଲା ପରେ ଏହା ଧ୍ୱଂସ ପାଇଥିଲା । କଳିଙ୍ଗରାଜ 'ଗୁହଶିବ' ଦନ୍ତର ଅଲୌକିକ ପ୍ରଭାବରେ ଦୀକ୍ଷିତ ହୁଅନ୍ତେ ବ୍ରାହ୍ମଣ 'ଗୁହଶିବ'ଙ୍କୁ ପରାସ୍ତ ଓ ବନ୍ଦୀ ସମର୍ପିତ ମଗଧରାଜ 'ପାଣ୍ଡୁ' ଯୁଦ୍ଧରେ 'ଗୁହଶିବ'ଙ୍କୁ ପରାସ୍ତ ଓ ବନ୍ଦୀ କରି 'ଦନ୍ତ ଧାତୁ'କୁ ମଗଧ ନେଇଯିବା ଯୋଜନା କଲେ । 'ଗୁହଶିବ'ଙ୍କ ଇଙ୍ଗିତରେ କନ୍ୟା ହେମମାଳା ଓ ଜାମାତା 'ଦନ୍ତ

କୁମାର'ଙ୍କ ହାତରେ ତାହାକୁ ସିଂହଳକୁ ସ୍ଥାନାନ୍ତରିତ କରିଦେଲେ। କିନ୍ତୁ ଦନ୍ତପୁର ବନ୍ଦର ନଜରବନ୍ଦୀରେ ଥିବାରୁ ଛଦ୍ମବେଶରେ ସେମାନେ ତାମ୍ରଲିପ୍ତ (ତମଲୁକ୍) ବନ୍ଦର ବାଟେ ସିଂହଳକୁ ପଳାୟନ କଲେ(୫)।

ବାସ୍ତବିକ ଏଇ ପାଲୁର 'ଦନ୍ତପୁର'ର ଇତିହାସ ଅଧିକ ଗବେଷଣା ସାପେକ୍ଷ ଓ ଅତୀବ ଗୁରୁତ୍ୱପୂର୍ଣ୍ଣ। ମୌର୍ଯ୍ୟ ବଂଶର ମଗଧ ସମ୍ରାଟ ଅଶୋକଙ୍କ ମୃତ୍ୟୁ ପରେ କଳିଙ୍ଗର ନିଜସ୍ୱ ଭୂମିପୁତ୍ର ମହାମେଘବାହନ ଐରଖାରବେଳ ଖ୍ରୀ: ପୂ: ୧ମ ଶତାବ୍ଦୀରେ ସିଂହାସନ ଆରୋହଣ କରିଥିଲେ। ତାଙ୍କର ଜନ୍ମ ରହସ୍ୟ ବୃତ୍ତାନ୍ତ ସମ୍ପର୍କରେ ଡ: ନୃସିଂହ ଚରଣ ପଣ୍ଡାଙ୍କ ପୁରସ୍କାରପ୍ରାପ୍ତ ଉପନ୍ୟାସ 'ଖାରବେଳ' ଦ୍ରଷ୍ଟବ୍ୟ। ଖାରବେଳ 'କ୍ଷାରବେଳ' ଅଟନ୍ତି। ଯିଏକି 'କ୍ଷାର' ଲବଣଯୁକ୍ତ ଧୂସର ମାଟିରେ ସମୁଦ୍ର ବେଳା ତଟରେ ଜନ୍ମ ନେଇଥିଲେ। ରାଜବୈଦ୍ୟଙ୍କ ପରାମର୍ଶରେ ତାଙ୍କ ଜନନୀ ବେଳା ପ୍ରାସାଦରେ ତିନିବର୍ଷ କଟାଇ ସନ୍ତାନ ପ୍ରସବ କରିଥିଲେ। ଉକ୍ତ ଉପନ୍ୟାସର ପ୍ରାରମ୍ଭିକ ଭିତ୍ତିଭୂମି ହେଉଛି ଋଷିକୁଲ୍ୟା ମୁହାଣ ସଂଲଗ୍ନ ସୁବିଶାଳ ଧୂସର ଏବଂ ବାଲୁକାବନ୍ତ; ଯାହା 'ଦନ୍ତପୁର' ଅଞ୍ଚଳର ପରିସର ଭିତରେ ଅବସ୍ଥିତ(୬)।

ଅନେକ ଉତ୍ଥାନପତନ, ଜୁଆର-ଭଟ୍ଟା, ଲୁଣ୍ଠନ-ଆକ୍ରମଣ, ବନ୍ୟା-ବାତ୍ୟା, ମହାମାରୀ, ଦୁର୍ଭିକ୍ଷ (ଗୋଣ୍ଡା ନଗରୀ ଓ ପୋତାଗଡ଼ର ଧ୍ୱଂସାବଶେଷ) ଆଜି ବିଭିନ୍ନ ବିପର୍ଯ୍ୟୟ ଓ ବୈଭିନ୍ନିକାର ବିବର୍ତ୍ତନ ଭିତରେ ଏଇ ଐତିହାସିକ 'ଦନ୍ତପୁର' ବିଲୁପ୍ତ। ହୁଏନ୍‌ସାଙ୍ଗ ବିବରଣୀ ସହ ଦକ୍ଷିଣ ଗଞ୍ଜାମର ଏକ କିମ୍ବଦନ୍ତୀର ସାକ୍ଷ୍ୟ ମିଳେ-ଦନ୍ତପୁରରେ ଜଣେ ପରାକ୍ରମୀ ମାଠରବଂଶୀ ରାଜା ବୌଦ୍ଧ ଭିକ୍ଷୁଙ୍କୁ ଅସହିଷ୍ଣୁ ହୋଇ ଷଡ଼ଯନ୍ତ୍ର କରି, ଭୋଜି ଖାଇବାକୁ ଡକାଇ ବୃହତ୍ ଗୃହ ମଧ୍ୟରେ ଅଗ୍ନି ସଂଯୋଗ କରି ଦଗ୍ଧ କରି ଦେଇଥିଲେ। ସେମାନଙ୍କ ଅଭିଶାପରେ 'ଦନ୍ତପୁର' ଜନଶୂନ୍ୟ ହୋଇ ଧ୍ୱଂସ ପାଇଯାଇଥିଲା(୭) (ଓଡ଼ିଆ ଲୋକ ସାହିତ୍ୟ ଉପରେ ବୌଦ୍ଧ ଧର୍ମ ଓ ଦର୍ଶନର ପ୍ରଭାବ; ଓଡ଼ିଆ ଲୋକ ସାହିତ୍ୟ ବିଶ୍ୱ ଭାରତୀ ପରିଷଦ)।

**ସହାୟକ ଗ୍ରନ୍ଥସୂଚୀ :**

(୧) ଓଡ଼ିଶାର ବୌଦ୍ଧ ସଂସ୍କୃତି, ପୃ: ୩୧, ଡ: ସୁରେନ୍ଦ୍ର କୁମାର ମହାରଣା

(୨) ପ୍ରବନ୍ଧ – 'କାର୍ତ୍ତିକ ପୂର୍ଣ୍ଣିମା'-ଶ୍ରୀ ଭଗବାନ ପଣ୍ଡା (ତତ୍ରୈବ)

(୩) ପ୍ରବନ୍ଧ – 'ବାଲିଯାତ୍ରା'-ଡ: କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, (ଓଡ଼ିଶାର ଓଷାବ୍ରତ, ପର୍ବପର୍ବାଣୀ ଓ ଯାନିଯାତ୍ରା-ପୃ: ୪୪୨)।

(୪) ତାରିଣୀ ଚରଣ ଗ୍ରନ୍ଥାବଳୀ (ପୃ: ୪୧୧)

(୫) ଓଡ଼ିଆ ଲୋକ ସାହିତ୍ୟ ଉପରେ ବୌଦ୍ଧ ଧର୍ମ ଓ ଦର୍ଶନର ପ୍ରଭାବ (ପ୍ରବନ୍ଧ)-ନଗେନ୍ଦ୍ରନାଥ ମହାପାତ୍ର। (ଓଡ଼ିଆ ଲୋକ-ସାହିତ୍ୟ-ବିଶ୍ୱଭାରତୀ ପରିଷଦ) (ପୃ :-୫୨ରୁ ୫୧)

(୬) ପୁରସ୍କାରପ୍ରାପ୍ତ ଐତିହାସିକ ଉପନ୍ୟାସ-'ଖାରବେଳ'-(ଡ: ନୃସିଂହ ଚରଣ ପଣ୍ଡା)

(୭) ଓଡ଼ିଆ ଲୋକ ସାହିତ୍ୟ ଉପରେ ବୌଦ୍ଧ ଧର୍ମ ଓ ଦର୍ଶନର ପ୍ରଭାବ-ନଗେନ୍ଦ୍ରନାଥ ମହାପାତ୍ର।

---

ସୁବର୍ଣ୍ଣପୁର, ଭଞ୍ଜନଗର : ଭଞ୍ଜ.
ଜିଲ୍ଲା : ଗଞ୍ଜାମ।

# ମଣିଷ ଖାଏନି ମଦ

ଗୋଲକ ବିହାରୀ ବିଶୋଇ

ମଣିଷ ଖାଏନି ମଦ
ମଦ ମଣିଷକୁ ଖାଏ,
ମଦ ଖାଇ ଖାଇ ଶେଷରେ ମଣିଷ
ଆୟୁର ଖୁଲିଯାଏ ।

ପିଲାଙ୍କ ମୁହଁରେ ଦାନା
ଦେବାକୁ କରଇ ମନା,
ମଦ ଖାଇବାର ପଇସ ତାହାକୁ
ଅମଣିଷ କରେ ସିନା ।

ମଦ ପିଇ ଦେଲା ପରେ
ଭଲ ଚିନ୍ତା ସେ ନକରେ,
ପିଲାଛୁଆପରେ ଜୁଲମ କରିଣ
ଘରଣୀକୁ ମାଡ଼ ମାରେ ।

ଭୋକ ଉପାସରେ ପଡ଼ି
ପିଲାଏ ମରନ୍ତି ଗଡ଼ି,
ମଦୁଆ ବାପୁଡ଼ା କିଛି ବୁଝେ ନାହିଁ
ଅଯଥାରେ କରେ ରଡ଼ି ।

ମଦ ପିଇ ମର ନାହିଁ
ଜଗତକୁ ସାର ନାହିଁ
ମଣିଷ ପରିକା ମଣିଷ ହୋଇବ
ମଦ ବିଦା କଲେ ଭାଇ ।

ତିଆରି କରନା ମଦ
ମଦୁଆ କର ବାସଦ
ମଦ ଦୋକାନକୁ ଶୀଘ୍ର ଉଠାଅ
କର ଜୁଟ ପ୍ରତିବାଦ ।

ମହାତ୍ମା ଗାନ୍ଧୀ ଦାଷାଦ
ଭୁଲିଯାଅ ବାଦ ଭେଦ
ନିଶା ନିବାରଣ କରିଲେ ଦେଶରୁ
ଦୂର ହୋଇବ ପ୍ରମାଦ ।

କ୍ୱାଟର-୨ ଆଲ୍.ବି.- ୧୦୮, ରୋଡ-୨,
ୟୁନିଟ୍-୯, ଭୁବନେଶ୍ୱର-୭

# ଲକ୍ଷ୍ମୀ

ଅଧ୍ୟାପକ ହୃଦାନନ୍ଦ ପାଣିଗ୍ରାହୀ

ସୁନା ଧାନରେ
ଗଢ଼ା
ତୋ ସିଂହାସନ,
ଧୋବ ଫରଫର
ପିଠଉ ପାଣିରେ
ତୋ' ପାଦ,
ପାଚିଲା ଧାନ କେଣ୍ଡାରେ
ତୋ' ବେଣୀ ।

ହସ ହସ ମୁହିଁରେ
ଖାଲି ଟିକେ
ଗୁହିଁଦେ ମା'
ବରଷିଯାଉ
କରୁଣାର ଶିଶିର କଣାଟକ
ତୋ' ହତଭାଗା
ସନ୍ତାନ ମଥାରେ ।

---

ମାଫତ : ଜୟରାମ କର,
ସ୍ଥାନ–ଅଲାଲପୁର,
ପୋ:/ଜି:–ଭଦ୍ରକ,

# ପ୍ରଗତି ପଥେ

କିଶୋର କୁମାର ପଟ୍ଟନାୟକ

ମାଟି ପିନ୍ଧେ ଯେତେ ଦିନ
ଜଳୁଥିବ ପରାଣର ଶିଖା
ତୁଣ୍ଡରୁ ମୋ ଝରୁଥିବ
ଅବାରିତଉଚ୍ଛଳ ଗୀତିକା
ସୃଷ୍ଟି ପଥେ ତୃଷ୍ଣା ମୋର
ବିଚ୍ଛୁରିତ ହେଉଥିବ ଯେବେ
ନିବାରିବି ସର୍ବ ଦୁଃଖ
ଥାଉ ଅବା ଯିଏ ଯେଉଁ ମତେ ।

କଳୁଷ କାଳିମା ଯାହା
ଘୋଡ଼ାଇଛୁ ସଂସ୍କୃତିକୁ ମୋର
ପ୍ରାଣଦାନ କରିବି ମୁଁ
ସରଜିବି ନୂତନ ସଂସାର
ପ୍ରଗତିର ପଥେ ସଦା
ଢାଳିଦେବି ସମସ୍ତ ବୟସ
ରହିବନି ମାଆ ବୁକେ
କିଛି ତ୍ରୁଟି କିଛି ଅବଶୋଷ ।

ଜୀବନ ଆଲୋକେ ଦେବି
ଆଲୋକିତ କରି ଏ ଭାରତ
ସଭିଙ୍କ ମୁଖରେ ଥିବ
ଭାରତର ଜୟଜୟ ଗୀତ ।

---

ସର୍ଣ୍ଣକୁଟୀର,
ଭୁବନେଶ୍ୱର–୧ ।



# ଆୟୁର୍ବେଦ ଓ ଧନ୍ୱନ୍ତରୀ

ଡାଃ ଅନନ୍ତ କୁମାର ଆଗ୍ରୁର୍ଯ୍ୟ

ମାନବ କଲ୍ୟାଣ କଳ୍ପେ ଭଗବାନ ଯୁଗେ ଯୁଗେ ଧରାପୃଷ୍ଠରେ ଅବତୀର୍ଣ୍ଣ ହୁଅନ୍ତି । ବିଷ୍ଣୁ ପୁରାଣ କହେ ଯେ ମନୁଷ୍ୟର ଧର୍ମାର୍ଥ କାମ ମୋକ୍ଷ (ଚତୁର୍ବର୍ଗ) ସାଧନର ପ୍ରଧାନ ଅନ୍ତରାୟ ହିଁ ବ୍ୟାଧି । ମନୁଷ୍ୟଙ୍କୁ ବ୍ୟାଧି ମୁକ୍ତ କରିବା ନିମିତ୍ତ ପବିତ୍ର କାର୍ତ୍ତିକ କୃଷ୍ଣପକ୍ଷ ତ୍ରୟୋଦଶୀ ତିଥିରେ ଭଗବାନ ବିଷ୍ଣୁ ବୈଦ୍ୟ ଧନ୍ୱନ୍ତରୀ ନାମରେ ଅମୃତପୂର୍ଣ୍ଣ କମଣ୍ଡଳୁ ଧାରଣ ପୂର୍ବକ ସମୁଦ୍ର ମନ୍ଥନ କାଳରେ ଆବିର୍ଭୂତ ହୋଇଥିଲେ । ଭଗବାନ ବିଷ୍ଣୁଙ୍କ ସହସ୍ର ନାମ ମଧ୍ୟରେ ବୈଦ୍ୟ ନାମଟି ମଧ୍ୟ ଅନ୍ତର୍ଭୁକ୍ତ ।

"ବେଦ୍ୟୋ ବୈଦ୍ୟଃ ସଦାଯୋଗୀ ନିର୍ବାଣଂ ଭେଷଜଂ ଭିଷକ୍"

ସେହିପରି ଶ୍ରୀମଦ୍ ଭାଗବତ ଏବଂ ଅଗ୍ନି ପୁରାଣ ବର୍ଣ୍ଣିତ ଉଦ୍ଧୃତାଂଶ "ଧନ୍ୱନ୍ତରୀଃ ସାକ୍ଷାତ୍ ବିଷ୍ଣୁଃ "ର ପ୍ରମାଣ ନିଦର୍ଶନ କରେ ।

ସର୍ବେ ଭଗବତଃ ସାକ୍ଷାତ୍ ବିଷ୍ଣୋରଂଶାଂଶ ସମ୍ଭବ
ଧନ୍ୱନ୍ତରୀ ରୀତି ଖ୍ୟାତଃ ଆୟୁର୍ବେଦ ଦୃଗଜ୍ୟଭାକ୍ ।
(ଶ୍ରୀମଦ୍ ଭାଗବତ)

ତତୋ ଧନ୍ୱନ୍ତରୀ ବିଷ୍ଣୁ ଆୟୁର୍ବେଦ ପ୍ରବର୍ତ୍ତକଃ
ବିଭ୍ରତ୍ କମଣ୍ଡଳୁଂ ପୂର୍ଣ୍ଣଂ ଅମୃତେନ ସମୁତ୍ଥିତଃ ।
(ଅଗ୍ନି ପୁରାଣ)

ସ୍କନ୍ଦ ପୁରାଣ, ଗରୁଡ଼ ପୁରାଣ ଓ ମାର୍କଣ୍ଡେୟ ପୁରାଣ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ଧନ୍ୱନ୍ତରୀ ତ୍ରେତୟା ଯୁଗରେ ଜନ୍ମଗ୍ରହଣ କରିଥିଲେ । ଉକ୍ତ ପ୍ରସଙ୍ଗରେ ଏକ ସୁନ୍ଦର କିମ୍ବଦନ୍ତୀ ମିଳେ । ଏକଦା ମହର୍ଷି ଗାଲବ ବନ ମଧ୍ୟରେ ଏଣେତେଣେ କୁଶ ଅନ୍ୱେଷଣ କରୁକରୁ ତୃଷାର୍ତ୍ତ ହୋଇପଡ଼ିଲେ, ମାତ୍ର ବନ ମଧ୍ୟରେ କୌଣସି ସ୍ଥାନରେ ଜଳ ନପାଇ ବନ ମଧ୍ୟରୁ ନିଷ୍କ୍ରାନ୍ତ ହୁଅନ୍ତେ ମାର୍ଗରେ ଜଳପୂର୍ଣ୍ଣ କଳସୀ ଧାରଣ କରିଥିବା ଏକ ଅନିନ୍ଦ୍ୟ ସୁନ୍ଦରୀ ଯୁବତୀଙ୍କୁ ଭେଟିଲେ । ତତ୍ପରେ ସେହି ଋଷି ଯୁବତୀଟିଙ୍କୁ ଜଳ ଯାଚଞ୍ଚା କରନ୍ତେ ଯୁବତୀ ଜଣକ କଳସୀଟିକୁ ପ୍ରଦାନ କରିଥିଲେ । କଳସୀ ଜଳ ଦ୍ୱାରା ତୃଷା ନିବାରଣାନ୍ତେ ତୁଷ୍ଟ ହୋଇ ଗାଲବ ଯୁବତୀଙ୍କୁ ଏକ ତେଜସ୍ୱୀ ପୁତ୍ରର ଜନନୀ ହେବା ନିମିତ୍ତ ବର ପ୍ରଦାନ କରିଥିଲେ । ଋଷିଙ୍କଠାରୁ ଏତାଦୃଶ ବର ଶୁଣି ଯୁବତୀ ଜଣକ ଲଜ୍ଜାବନତ ହେଲେ । ଲଜ୍ଜାରେ ବିକଚ ପଦ୍ମମୁଖ ଲଜ୍ଜାରେ ରକ୍ତିମ ବର୍ଣ୍ଣ ଧାରଣ କଲା । କାରଣ ଯୁବତୀ ଜଣକ ସେ ସମୟରେ ଅବିବାହିତା ଥିଲେ ଏବଂ ତାଙ୍କର ନାମ ଥିଲା ବୀରଭଦ୍ରା । ମାତ୍ର ମହର୍ଷି ଗାଲବ ଅନନ୍ୟୋପାୟ ହୋଇ ତଥାକଥିତ ଘଟଣାର ସମାଧାନ ନିମିତ୍ତ ସମବେତ ଋଷି ଗହଣରେ ପହଞ୍ଚିଲେ । ପରିଶେଷରେ ସର୍ବ ମୁନି ସମ୍ମତିକ୍ରମେ ସଂଗୃହୀତ କୁଶ ତୃଣର ଏକ ପିତୁଳା ଯୁବତୀ କୋଳରେ ସ୍ଥାପନ କରି ତାକୁ ଜୀବନ୍ନ୍ୟାସ ଦେଲେ । ସେହି ଶିଶୁଟିର ନାମ 'ବୈଦ୍ୟ' ରଖାଗଲା । କାରଣ ସେ ବେଦ ମନ୍ତ୍ର ଦ୍ୱାରା ଜନ୍ମ ଲାଭ କରିଥିଲା । ସିଏ ବୈଦ୍ୟ ସେ ହିଁ ଭଗବାନ ଧନ୍ୱନ୍ତରୀ ।

କେତେକ କହନ୍ତି ସ୍ୱର୍ଗର ଦେବ ଚିକିତ୍ସକ ଧନ୍ୱନ୍ତରୀ ପ୍ରଥମେ କାଶୀରାଜ ଦେବଦାସ ଭାବେ ଜନ୍ମ ଗ୍ରହଣ କରି ପରେ ଧନ୍ୱନ୍ତରୀ ରୂପେ ବିବେଚିତ ହୋଇଥିଲେ ଏବଂ ଯେ କି ରାଜର୍ଷି ବିଶ୍ୱାମିତ୍ରଙ୍କ ପୁତ୍ର ସୁଶ୍ରୁତଙ୍କୁ ଶଲ୍ୟ ବିଜ୍ଞାନ ସମ୍ବନ୍ଧରେ ଶିକ୍ଷା ପ୍ରଦାନ କରିଥିଲେ । ଏହି ଶିକ୍ଷା ଦାନ ପ୍ରସଙ୍ଗରେ ସେ କହିଥିଲେ :

ଅହଂ ହି ଧନ୍ୱନ୍ତରୀରାଦିଦେବୋ
ଜରାରୁଜାମୃତ୍ୟୁ ହରୋଽମରାଣାମ୍
ଶଲ୍ୟାଙ୍ଗମଙ୍ଗୈରପରୈରୁପେତଃ
ପ୍ରାପ୍ତୋଽସ୍ମି ଗାଂଭୂୟ ଇହୋପଦେଷ୍ଟୁମ୍

ଅର୍ଥାତ୍ ମୁଁ ସେହି ଧନ୍ୱନ୍ତରୀ ଯିଏ କି ସମସ୍ତ ଦେବତାଙ୍କୁ ରୋଗମୁକ୍ତ କରିଥିଲି ଏବଂ ମୃତ୍ୟୁର କରାଳ କବଳରୁ ଓ ବାର୍ଦ୍ଧକ୍ୟର ଜରାଜୀର୍ଣ୍ଣ ଅବସ୍ଥାରୁ ଉଦ୍ଧାର କରିଥିଲି । ବର୍ତ୍ତମାନ ମୁଁ ଏହି ପୃଥିବୀରେ ଅବତୀର୍ଣ୍ଣ ହୋଇଛି ଶଲ୍ୟ ତନ୍ତ୍ର ଓ ଆୟୁର୍ବେଦର ଅନ୍ୟାନ୍ୟ ବିଭାଗ ବିଷୟରେ ପ୍ରାଞ୍ଜଳ ଶିକ୍ଷା ଦେବା ପାଇଁ । ଏହିପରି ଧନ୍ୱନ୍ତରୀଙ୍କର ଜନ୍ମ ବୃତ୍ତାନ୍ତ ରହସ୍ୟପୂର୍ଣ୍ଣ ହେଲେ ହେଁ ସେ ଯେ ସର୍ବାଦୌ ଆୟୁର୍ବେଦର ପ୍ରବର୍ତ୍ତକ ଏବଂ ଆଦିବୈଦ୍ୟ ଅଟନ୍ତି ଏ କଥା ଅସ୍ୱୀକାର କରାଯାଇ ନପାରେ ।

ଆୟୁର୍ବେଦ ପ୍ରବର୍ତ୍ତକ ଧନ୍ୱନ୍ତରୀଙ୍କ ବିଷୟ ଆଲୋଚନା କଲାବେଳେ ଏହି ଆୟୁର୍ବେଦ ଶାସ୍ତ୍ର ସମ୍ବନ୍ଧରେ ଜିଜ୍ଞାସା ମନ ମଧ୍ୟରେ ଆସିଥାଏ । ଆୟୁର୍ବେଦ କହିଲେ ଯେଉଁ ଶାସ୍ତ୍ରରେ ନିରବଚ୍ଛିନ୍ନ ଓ କ୍ଲେଶରହିତ ଜୀବନ ଧାରଣର ଉପାୟ ବିଧିବଦ୍ଧ ଭାବେ ବର୍ଣ୍ଣନା କରାଯାଇଥାଏ ତାକୁ ହିଁ ବୁଝାଇଥାଏ । ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଲା ପ୍ରଥମତଃ "ସୁସ୍ଥ ବ୍ୟକ୍ତିର ସ୍ୱାସ୍ଥ୍ୟ ରକ୍ଷା" ଏବଂ ତତ୍ପରେ "ରୋଗୀର ରୋଗ ନିରାକରଣ ଉପାୟ" । ରୋଗ ଚିକିତ୍ସା ଅପେକ୍ଷା ସୁସ୍ଥ ବ୍ୟକ୍ତିର ସ୍ୱାସ୍ଥ୍ୟରକ୍ଷା ଉପରେ ଆୟୁର୍ବେଦ ବେଶୀ ଗୁରୁତ୍ୱ ପ୍ରଦାନ କରିଥାଏ । ତେଣୁ ଆୟୁର୍ବେଦରେ ଦିନଚର୍ଯ୍ୟା, ରାତ୍ରିଚର୍ଯ୍ୟା, ଋତୁଚର୍ଯ୍ୟା ସହ କି କି ନିୟମ ପାଳନ ଓ

ଦ୍ରବ୍ୟ ଗ୍ରହଣ କଲେ ସ୍ୱାସ୍ଥ୍ୟ ଅତୁଟ ରହିବ ଏବଂ ରୋଗ ସହଜରେ ଆକ୍ରମଣ କରିପାରିବ ନାହିଁ ସେ ସବୁ ପରିଦୃଷ୍ଟ ହୁଏ ।

ବେଦର ପ୍ରତ୍ୟେକ ଖଣ୍ଡରେ ଆୟୁର୍ବେଦ ଶାସ୍ତ୍ରର ବର୍ଣ୍ଣନା ଥିଲେ ମଧ୍ୟ ଅଥର୍ବ ବେଦରେ ଶରୀର ସମ୍ବନ୍ଧୀୟ ଜ୍ଞାନ, ଔଷଧ ଏବଂ ଚିକିତ୍ସା ସମ୍ବନ୍ଧୀୟ ବିସ୍ତୃତ ବର୍ଣ୍ଣନା ରହିଥିବାରୁ ଏହାକୁ ଅଥର୍ବ ବେଦର 'ଉପବେଦ' କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଥର୍ବ ବେଦର ସାରଭୂତ ଆୟୁର୍ବେଦକୁ ଆଦିଦେବ ବ୍ରହ୍ମା ସର୍ବ ପ୍ରଥମେ ଦକ୍ଷ ପ୍ରଜାପତିଙ୍କୁ ପ୍ରକାଶ କରିଥିଲେ । ତାଙ୍କଠାରୁ ଅଶ୍ୱିନୀ କୁମାର ଦ୍ୱୟ ଶିକ୍ଷାଲାଭ କରିଥିଲେ । ଅଶ୍ୱିନୀ କୁମାର ଦ୍ୱୟଙ୍କଠାରୁ ଇନ୍ଦ୍ର ଏବଂ ଇନ୍ଦ୍ରଙ୍କଠାରୁ ଆତ୍ରେୟ, ଭରଦ୍ୱାଜ, ଧନ୍ୱନ୍ତରୀ ଆଦି ଶିକ୍ଷାଲାଭ କରି ଏହାକୁ ମାନବ କଲ୍ୟାଣ କର୍ମେ ବିନିଯୋଗ କରିଥିଲେ । ଆୟୁର୍ବେଦ ଗ୍ରନ୍ଥମାନଙ୍କ ମଧ୍ୟରୁ ସତ୍ୟ ଯୁଗରେ ଆତ୍ରେୟ ସଂହିତା, ଦ୍ୱାପରରେ ସୁଶ୍ରୁତ ସଂହିତା, କଳିରେ ବାଗଭଟ୍ଟ ସଂହିତା ଏବଂ ପରବର୍ତ୍ତୀ ସମୟରେ ଭାବ ପ୍ରକାଶ, ମାଧବନିଦାନ, ଭୈଷଜ ରତ୍ନାବଳୀ ଇତ୍ୟାଦିର ସୃଷ୍ଟି ହୋଇଥିଲା ବୋଲି ବର୍ଣ୍ଣନା ମିଳେ । ଅତଏବ ଆୟୁର୍ବେଦ ଅନାଦି କାଳରୁ ରହିଥିଲେ ମଧ୍ୟ ଖ୍ରୀ: ପୂ: ୬୦୦ରୁ ଏହା ସିଧାସଳଖ ଧାରାବାହିକ ଭାବେ ମାନବ ସମାଜର ବ୍ୟବହାରରେ ଆସୁଛି ବୋଲି ଇତିହାସ ପ୍ରମାଣ କରେ ।

'ଧନୁଃ ଶଲ୍ୟଂ ତସ୍ୟାନ୍ତଂ ଗଚ୍ଛତୀତି ଧନ୍ୱନ୍ତରୀଃ' ଅର୍ଥାତ୍ ଶଲ୍ୟ ଶାସ୍ତ୍ର (Science of Surgery)ର ଆଦ୍ୟନ୍ତର ସମ୍ୟକ୍‌ଜ୍ଞାନକୁ ଧନ୍ୱନ୍ତରୀ କହନ୍ତି । ସେହି ଧନ୍ୱନ୍ତରୀ ଶଲ୍ୟ ବିଜ୍ଞାନର ପ୍ରଧାନ ସାଧକ ଅଟନ୍ତି । ଦକ୍ଷଙ୍କର କଟା ମୁଣ୍ଡକୁ ପୁଣି ତାଙ୍କ ଶରୀର ସହ ସଂଯୋଗ କରି ପୂର୍ବ ଅକ୍ଷୁର୍ଣ୍ଣ ଶରୀରକୁ ଫେରାଇ ଆଣିବା ପାଇଁ ହିଁ ତତ୍କାଳୀନ ଶଲ୍ୟ ବିଜ୍ଞାନର ଶ୍ରେଷ୍ଠ ନିଦର୍ଶନ । ତାଙ୍କଠାରୁ ଏହି ଶଲ୍ୟତନ୍ତ୍ର ବୈଷୟିକ ଶିକ୍ଷା ଔପଧେନବ, ଔରଭ୍ର, ପୌଷ୍କଳାବତ, ଗୋପୁର ରକ୍ଷିତ, ବୈତରଣ, କରବୀର୍ଯ୍ୟ ସୁଶ୍ରୁତ ଇତ୍ୟାଦି ଋଷିଗଣ ଆହରଣ କରିଥିଲେ ।

ବ୍ରହ୍ମାଙ୍କ ଦ୍ୱାରା ପ୍ରଥବୀକୃତ ହୋଇଥିବା ପଞ୍ଚାୟୁର୍ବେଦ (ବୃକ୍ଷ, ଗଜ, ନର, ଗଵ ଓ ଅଶ୍ୱାୟୁର୍ବେଦ) ମଧ୍ୟରୁ ନରାୟୁର୍ବେଦ ସମ୍ବନ୍ଧରେ ଧନ୍ୱନ୍ତରୀ ସୁଶ୍ରୁତ ପ୍ରଭୃତି ଶିଷ୍ୟଗଣଙ୍କୁ ଶିକ୍ଷା ପ୍ରଦାନ କରିଥିଲେ । ନରାୟୁର୍ବେଦକୁ 'ଅଷ୍ଟାଙ୍ଗ ଆୟୁର୍ବେଦ' ମଧ୍ୟ କହନ୍ତି । ଅର୍ଥାତ୍ ଏହାକୁ ଆଠଟି ଅଙ୍ଗରେ ବିଭକ୍ତ କରାଯାଏ, ଯଥା :

(୧) କାୟ ଚିକିତ୍ସା (Medicine), (୨) କୌମାର ଭୃତ୍ୟ (Peadiatrics), (୩) ଶଲ୍ୟ ଚିକିତ୍ସା (Surgery), (୪) ଶାଲାକ୍ୟ (Minor Operation), (୫) ଭୂତବିଦ୍ୟା (Spells & ircentation), (୬) ଅଗଦତ (Toxicology & Forensic Medicine), (୭) ରସାୟନ ତନ୍ତ୍ର (Rejuvenation) ଏବଂ (୮) ବାଜୀକରଣ ତନ୍ତ୍ର (Sexual invigoration) ।

ଏତଦ୍ ସମ୍ଭୂତ ଚିକିତ୍ସା ସମସ୍ତ ଚିକିତ୍ସାଠାରୁ ଉର୍ଦ୍ଧ୍ୱରେ । ଏହ ପୁରାତନ, ଶାଶ୍ୱତ, ଅନାଦି ଓ ଚିରନ୍ତନ ଅଟେ । ଏହାର ଚିକିତ୍ସା ସିଦ୍ଧାନ୍ତ ଅନ୍ୟାନ୍ୟ ଚିକିତ୍ସାଠାରୁ ଭିନ୍ନ ତଥା ଉନ୍ନତତର ।

"ଯାହ୍ୟୁ ଦୀର୍ଣ୍ଣଂ ଶମୟତି ନାନ୍ୟବ୍ୟାଧିଂ କରୋତି ଯଃ
ସାକ୍ରିୟା ନତୁ ଯା ବ୍ୟାଧିଂ ହରତ୍ୟନ୍ୟ ମୁଦୀରୟେତ୍ ।"

ଯାହା ଉତ୍କଟ ରୋଗକୁ ଶାନ୍ତ କରେ ଏବଂ ଅନ୍ୟ ରୋଗ ଜନ୍ମାଏ ନାହିଁ ତା'ର ନାମ ହିଁ ଚିକିତ୍ସା ଏବଂ ତାହା କେବଳ ସଫଳ ଔଷଧ ପ୍ରୟୋଗରେ ସମ୍ଭବ ହୁଏ । କିନ୍ତୁ ଯାହା ଗୋଟିଏ ରୋଗକୁ ନଷ୍ଟ କରି ଅନ୍ୟ ରୋଗର କାରଣ ବା ସହାୟକ କାରଣ ହୁଏ ତାହା ଚିକିତ୍ସା ପଦବାଚ୍ୟ ନୁହେଁ ।

ଏହି ଆୟୁର୍ବେଦ ବିଜ୍ଞାନ ଦେବ ପ୍ରଣୀତ । ଅନେକ ଯୁଗ ବିବର୍ତ୍ତନ ପରେ ମଧ୍ୟ ଏହି ପ୍ରାଚ୍ୟ ବିଜ୍ଞାନ ସମ୍ଭୂତ ବେଦୋକ୍ତ ଆୟୁର୍ବେଦ ତା'ର ସଫଳ ଚିକିତ୍ସା ଏବଂ ସେହି ମଙ୍ଗଳମୟ ଧନ୍ୱନ୍ତରୀଙ୍କର ପବିତ୍ର କରୁଣାରୁ ନିତ୍ୟ, ଚିର ଭାସ୍ୱର ତଥା ସମଗ୍ର ଚିକିତ୍ସା ଜଗତର ପଥ ପ୍ରଦର୍ଶକ ହୋଇ ରହିଛି । ତେଣୁ ଏହି "ଧନ୍ୱନ୍ତରୀ ଜୟନ୍ତୀ" ଉତ୍ସବ ଅବସରରେ ସେହି ଅନନ୍ତ ଭୂମାଙ୍କର ପଦ ବନ୍ଦନ କରୁଛି ।

"ଚତୁର୍ଭୁଜଂ ପୀତବସ୍ତ୍ରଂ ସର୍ବାଳଙ୍କାର ଶୋଭିତଂ
ଧ୍ୟାୟେତ୍ ଧନ୍ୱନ୍ତରୀ ଦେବଂ ସୁରାସୁର ନମସ୍କୃତମ୍
ଅମୃତ କଳସଧାରୀ ବୈଦ୍ୟ ବିଦ୍ୟା ପ୍ରସୂରୀ
ସୁରଗଣ ସୁଖକାରୀ ଦୈତ୍ୟଦର୍ପାପହାରି
ମନୁ ଜହିତ ବିସ୍ତାରୀ ସର୍ବରୋଗାପହାରୀ
ହୃଦୟ ଜଳଧି ମଧ୍ୟେ ଭାତୁ ଧନ୍ୱନ୍ତରୀନଃ ।"

ଅବସରପ୍ରାପ୍ତ ଆୟୁର୍ବେଦ ଚିକିତ୍ସାଧିକାରୀ,
ସୁନ୍ଦରଗଡ଼ ।

# ଆୟୁର୍ବେଦ ଓ ଧନ୍ୱନ୍ତରୀ

**ଡାଃ ଅନନ୍ତ କୁମାର ଆଶ୍ଚର୍ଯ୍ୟ**

ମାନବ କଲ୍ୟାଣ କଳ୍ପେ ଭଗବାନ ଯୁଗେ ଯୁଗେ ଧରାପୃଷ୍ଠରେ ଅବତୀର୍ଣ୍ଣ ହୁଅନ୍ତି । ବିଷ୍ଣୁ ପୁରାଣ କହେ ଯେ ମନୁଷ୍ୟର ଧର୍ମାର୍ଥ କାମ ମୋକ୍ଷ (ଚତୁର୍ବର୍ଗ) ସାଧନର ପ୍ରଧାନ ଅନ୍ତରାୟ ହିଁ ବ୍ୟାଧି । ମନୁଷ୍ୟଙ୍କୁ ବ୍ୟାଧି ମୁକ୍ତ କରିବା ନିମିତ୍ତ ପବିତ୍ର କାର୍ତ୍ତିକ କୃଷ୍ଣପକ୍ଷ ତ୍ରୟୋଦଶୀ ତିଥିରେ ଭଗବାନ ବିଷ୍ଣୁ ବୈଦ୍ୟ ଧନ୍ୱନ୍ତରୀ ନାମରେ ଅମୃତପୂର୍ଣ୍ଣ କମଣ୍ଡଳୁ ଧାରଣ ପୂର୍ବକ ସମୁଦ୍ର ମନ୍ଥନ କାଳରେ ଆବିର୍ଭୂତ ହୋଇଥିଲେ । ଭଗବାନ ବିଷ୍ଣୁଙ୍କ ସହସ୍ର ନାମ ମଧ୍ୟରେ ବୈଦ୍ୟ ନାମଟି ମଧ୍ୟ ଅନ୍ତର୍ଭୁକ୍ତ ।

"ବେଦ୍ୟୋ ବୈଦ୍ୟଃ ସଦାଯୋଗୀ ନିର୍ବାଣଂ ଭେଷଜଂ ଭିଷକ୍"

ସେହିକ୍ରମେ ଶ୍ରୀମଦ୍ ଭାଗବତ ଏବଂ ଅଗ୍ନି ପୁରାଣ ବର୍ଣ୍ଣିତ ଉଦ୍ଧୃତାଂଶ "ଧନ୍ୱନ୍ତରୀଃ ସାକ୍ଷାତ୍ ବିଷ୍ଣୁଃ"ର ପ୍ରମାଣ ନିଦର୍ଶନ କରେ ।

ସବୈ ଭଗବତଃ ସାକ୍ଷାତ୍ ବିଷ୍ଣୋରଂଶାଂଶ ସମ୍ଭବ
ଧନ୍ୱନ୍ତରୀ ଇତି ଖ୍ୟାତଃ ଆୟୁର୍ବେଦ ଦୃଗିଜ୍ୟଭାକ୍ ।
(ଶ୍ରୀମଦ୍ ଭାଗବତ)

ତତୋ ଧନ୍ୱନ୍ତରୀ ବିଷ୍ଣୁ ଆୟୁର୍ବେଦ ପ୍ରବର୍ତ୍ତକଃ
ବିଭ୍ରତ୍ କମଣ୍ଡଳୁଂ ପୂର୍ଣ୍ଣଂ ଅମୃତେନ ସମୁତ୍ଥିତଃ ।
(ଅଗ୍ନି ପୁରାଣ)

ସ୍କନ୍ଦ ପୁରାଣ, ଗରୁଡ଼ ପୁରାଣ ଓ ମାର୍କଣ୍ଡେୟ ପୁରାଣ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ଧନ୍ୱନ୍ତରୀ ତ୍ରେତୟା ଯୁଗରେ ଜନ୍ମଗ୍ରହଣ କରିଥିଲେ । ଉକ୍ତ ପ୍ରସଙ୍ଗରେ ଏକ ସୁନ୍ଦର କିମ୍ବଦନ୍ତୀ ମିଳେ । ଏକଦା ମହର୍ଷି ଗାଳବ ବନ ମଧ୍ୟରେ ଏଣେତେଣେ କୁଶ ଅନ୍ୱେଷଣ କରୁକରୁ ତୃଷାର୍ତ୍ତ ହୋଇପଡ଼ିଲେ, ମାତ୍ର ବନ ମଧ୍ୟରେ କୌଣସି ସ୍ଥାନରେ ଜଳ ନପାଇ ବନ ମଧ୍ୟରୁ ନିଷ୍କ୍ରାନ୍ତ ହୁଅନ୍ତେ ମାର୍ଗରେ ଜଳପୂର୍ଣ୍ଣ କଳସୀ ଧାରଣ କରିଥିବା ଏକ ଅନିନ୍ଦ୍ୟ ସୁନ୍ଦରୀ ଯୁବତୀଙ୍କୁ ଭେଟିଲେ । ତତ୍ପରେ ସେହି ଋଷି ଯୁବତୀଟିଙ୍କୁ ଜଳ ଯାଚଞ୍ଚା କରନ୍ତେ ଯୁବତୀ ଜଣକ କଳସୀଟିକୁ ପ୍ରଦାନ କରିଥିଲେ । କଳସୀ ଜଳ ଦ୍ୱାରା ତୃଷା ନିବାରଣାନ୍ତେ ତୃପ୍ତ ହୋଇ ଗାଳବ ଯୁବତୀଙ୍କୁ ଏକ ତେଜସ୍ୱୀ ପୁତ୍ରର ଜନନୀ ହେବା ନିମିତ୍ତ ବର ପ୍ରଦାନ କରିଥିଲେ । ଋଷିଙ୍କଠାରୁ ଏତାଦୃଶ ବର ଶୁଣି ଯୁବତୀ ଜଣକ ଲଜ୍ଜାବନତ ହେଲେ । ଲଜ୍ଜାରେ ବିକଚ ପଦ୍ମମୁଖ ଲଜ୍ଜାରେ ରକ୍ତିମ ବର୍ଣ୍ଣ ଧାରଣ କଲା । କାରଣ ଯୁବତୀ ଜଣକ ସେ ସମୟରେ ଅବିବାହିତା ଥିଲେ ଏବଂ ତାଙ୍କର ନାମ ଥିଲା ବୀରଭଦ୍ରା । ମାତ୍ର ମହର୍ଷି ଗାଳବ ଅନନ୍ୟୋପାୟ ହୋଇ ତଥାକଥିତ ଘଟଣାର ସମାଧାନ ନିମିତ୍ତ ସମବେତ ଋଷି ଗହଣରେ ପହଞ୍ଚିଲେ । ପରିଶେଷରେ ସର୍ବ ମୁନି ସମ୍ମତିକ୍ରମେ ସଂଗୃହୀତ କୁଶ ତୃଣର ଏକ ପିତୁଳା ଯୁବତୀ କୋଳରେ ସ୍ଥାପନ କରି ତାକୁ ଜୀବନ୍ୟାସ ଦେଲେ । ସେହି ଶିଶୁଟିର ନାମ 'ବୈଦ୍ୟ' ରଖାଗଲା । କାରଣ ସେ ବେଦ ମନ୍ତ୍ର ଦ୍ୱାରା ଜନ୍ମ ଲାଭ କରିଥିଲା । ଯିଏ ବୈଦ୍ୟ ସେ ହିଁ ଭଗବାନ ଧନ୍ୱନ୍ତରୀ ।

କେତେକ କହନ୍ତି ସ୍ୱର୍ଗର ଦେବ ଚିକିତ୍ସକ ଧନ୍ୱନ୍ତରୀ ପ୍ରଥମେ କାଶୀରାଜ ଦେବଦାସ ଭାବେ ଜନ୍ମ ଗ୍ରହଣ କର ପରେ ଧନ୍ୱନ୍ତରୀ ରୂପେ ବିବେଚିତ ହୋଇଥିଲେ ଏବଂ ଯେ କି ରାଜର୍ଷି ବିଶ୍ୱାମିତ୍ରଙ୍କ ପୁତ୍ର ସୁଶ୍ରୁତଙ୍କୁ ଶଲ୍ୟ ବିଜ୍ଞାନ ସମ୍ବନ୍ଧରେ ଶିକ୍ଷା ପ୍ରଦାନ କରିଥିଲେ । ଏହି ଶିକ୍ଷା ଦାନ ପ୍ରସଙ୍ଗରେ ସେ କହିଥିଲେ :

ଅହଂ ହି ଧନ୍ୱନ୍ତରୀରାଦିଦେବୋ
ଜରାରୁଜାମୃତ୍ୟୁ ହରୋଽମରାଣାମ୍
ଶଲ୍ୟାଙ୍ଗମଙ୍ଗୈରପରୈରୁପେତଃ
ପ୍ରାପ୍ତୋଽସ୍ମି ଗାଂଭୂୟ ଇହୋପଦେଷ୍ଟୁମ୍

ଅର୍ଥାତ୍ ମୁଁ ସେହି ଧନ୍ୱନ୍ତରୀ ଯିଏ କି ସମସ୍ତ ଦେବତାଙ୍କୁ ରୋଗମୁକ୍ତ କରିଥିଲି ଏବଂ ମୃତ୍ୟୁର କରାଳ କବଳରୁ ଓ ବାର୍ଦ୍ଧକ୍ୟର ଜରାଜୀର୍ଣ୍ଣ ଅବସ୍ଥାରୁ ଉଦ୍ଧାର କରିଥିଲି । ବର୍ତ୍ତମାନ ମୁଁ ଏହି ପୃଥିବୀରେ ଅବତୀର୍ଣ୍ଣ ହୋଇଛି ଶଲ୍ୟ ତନ୍ତ୍ର ଓ ଆୟୁର୍ବେଦର ଅନ୍ୟାନ୍ୟ ବିଭାଗ ବିଷୟରେ ପ୍ରାଞ୍ଜଳ ଶିକ୍ଷା ଦେବା ପାଇଁ । ଏହିପରି ଧନ୍ୱନ୍ତରୀଙ୍କର ଜନ୍ମ ବୃତ୍ତାନ୍ତ ରହସ୍ୟପୂର୍ଣ୍ଣ ହେଲେ ହେଁ ସେ ଯେ ସର୍ବାଦୌ ଆୟୁର୍ବେଦର ପ୍ରବର୍ତ୍ତକ ଏବଂ ଆଦିବୈଦ୍ୟ ଅଟନ୍ତି ଏ କଥା ଅସ୍ୱୀକାର କରାଯାଇ ନପାରେ ।

ଆୟୁର୍ବେଦ ପ୍ରବର୍ତ୍ତକ ଧନ୍ୱନ୍ତରୀଙ୍କ ବିଷୟ ଆଲୋଚନା କଲାବେଳେ ଏହି ଆୟୁର୍ବେଦ ଶାସ୍ତ୍ର ସମ୍ପର୍କରେ ଜିଜ୍ଞାସା ମନ ମଧ୍ୟରେ ଆସିଥାଏ । ଆୟୁର୍ବେଦ କହିଲେ ଯେଉଁ ଶାସ୍ତ୍ରରେ ନିରବଚ୍ଛିନ୍ନ ଓ କ୍ଲେଶରହିତ ଜୀବନ ଧାରଣର ଉପାୟ ବିଧିବଦ୍ଧ ଭାବେ ବର୍ଣ୍ଣନା କରାଯାଇଥାଏ ତାକୁ ହିଁ ବୁଝାଇଥାଏ । ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଲା ପ୍ରଥମତଃ "ସୁସ୍ଥ ବ୍ୟକ୍ତିର ସ୍ୱାସ୍ଥ୍ୟ ରକ୍ଷା" ଏବଂ ତତ୍ପରେ "ରୋଗୀର ରୋଗ ନିରାକରଣ ଉପାୟ" । ରୋଗ ଚିକିତ୍ସା ଅପେକ୍ଷା ସୁସ୍ଥ ବ୍ୟକ୍ତିର ସ୍ୱାସ୍ଥ୍ୟରକ୍ଷା ଉପରେ ଆୟୁର୍ବେଦ ବେଶୀ ଗୁରୁତ୍ୱ ପ୍ରଦାନ କରିଥାଏ । ତେଣୁ ଆୟୁର୍ବେଦରେ ଦିନଚର୍ଯ୍ୟା, ରାତ୍ରିଚର୍ଯ୍ୟା, ଋତୁଚର୍ଯ୍ୟା ସହ କି କି ନିୟମ ପାଳନ ଓ

ଦ୍ରବ୍ୟ ଗ୍ରହଣ କଲେ ସ୍ୱାସ୍ଥ୍ୟ ଅତୁଟ ରହିବ ଏବଂ ରୋଗ ସହଜରେ ଆକ୍ରମଣ କରିପାରିବ ନାହିଁ ସେ ସବୁ ପରିଦୃଷ୍ଟ ହୁଏ ।

ବେଦର ପ୍ରତ୍ୟେକ ଖଣ୍ଡରେ ଆୟୁର୍ବେଦ ଶାସ୍ତ୍ରର ବର୍ଣ୍ଣନା ଥିଲେ ମଧ୍ୟ ଅଥର୍ବ ବେଦରେ ଶରୀର ସମ୍ବନ୍ଧୀୟ ଜ୍ଞାନ, ଔଷଧ ଏବଂ ଚିକିତ୍ସା ସମ୍ବନ୍ଧୀୟ ବିସ୍ତୃତ ବର୍ଣ୍ଣନା ରହିଥିବାରୁ ଏହାକୁ ଅଥର୍ବ ବେଦର 'ଉପବେଦ' କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଥର୍ବ ବେଦର ସାରଭୂତ ଆୟୁର୍ବେଦକୁ ଆଦିଦେବ ବ୍ରହ୍ମା ସର୍ବ ପ୍ରଥମେ ଦକ୍ଷ ପ୍ରଜାପତିଙ୍କୁ ପ୍ରକାଶ କରିଥିଲେ । ତାଙ୍କଠାରୁ ଅଶ୍ୱିନୀ କୁମାର ଦ୍ୱୟ ଶିକ୍ଷାଲାଭ କରିଥିଲେ । ଅଶ୍ୱିନୀ କୁମାର ଦ୍ୱୟଙ୍କଠାରୁ ଇନ୍ଦ୍ର ଏବଂ ଇନ୍ଦ୍ରଙ୍କଠାରୁ ଆତ୍ରେୟ, ଭରଦ୍ୱାଜ, ଧନ୍ୱନ୍ତରୀ ଆଦି ଶିକ୍ଷାଲାଭ କରି ଏହାକୁ ମାନବ କଲ୍ୟାଣ କଳ୍ପେ ବିନିଯୋଗ କରିଥିଲେ । ଆୟୁର୍ବେଦ ଗ୍ରନ୍ଥମାନଙ୍କ ମଧ୍ୟରୁ ସତ୍ୟ ଯୁଗରେ ଆତ୍ରେୟ ସଂହିତା, ଦ୍ୱାପରରେ ସୁଶ୍ରୁତ ସଂହିତା, କଳିରେ ବାଗଭଟ ସଂହିତା ଏବଂ ପରବର୍ତ୍ତୀ ସମୟରେ ଭାବ ପ୍ରକାଶ, ମାଧବନିଦାନ, ଭୈଷଜ ରତ୍ନାବଳୀ ଇତ୍ୟାଦିର ସୃଷ୍ଟି ହୋଇଥିଲା ବୋଲି ବର୍ଣ୍ଣନା ମିଳେ । ଅତଏବ ଆୟୁର୍ବେଦ ଅନାଦି କାଳରୁ ରହିଥିଲେ ମଧ୍ୟ ଖ୍ରୀ: ପୂ: ୬୦୦ରୁ ଏହା ସିଧାସଳଖ ଧାରାବାହିକ ଭାବେ ମାନବ ସମାଜର ବ୍ୟବହାରରେ ଆସୁଛି ବୋଲି ଇତିହାସ ପ୍ରମାଣ କରେ ।

'ଧନୁଃ ଶଲ୍ୟଂ ତସ୍ୟାନ୍ତଂ ଗଚ୍ଛତୀତି ଧନ୍ୱନ୍ତରୀଃ' ଅର୍ଥାତ୍ ଶଲ୍ୟ ଶାସ୍ତ୍ର (Science of Surgery)ର ଆଦ୍ୟନ୍ତର ସମ୍ୟକ୍‌ଜ୍ଞାନକୁ ଧନ୍ୱନ୍ତରୀ କହନ୍ତି । ସେହି ଧନ୍ୱନ୍ତରୀ ଶଲ୍ୟ ବିଜ୍ଞାନର ପ୍ରଧାନ ସାଧକ ଅଟନ୍ତି । ଦକ୍ଷଙ୍କର କଟା ମୁଣ୍ଡକୁ ପୁଣି ତାଙ୍କ ଶରୀର ସହ ସଂଯୋଗ କରି ପୂର୍ବ ଅକ୍ଷୁର୍ଣ୍ଣ ଶରୀରକୁ ଫେରାଇ ଆଣିବା ପାଇଁ ହିଁ ତତ୍କାଳୀନ ଶଲ୍ୟ ବିଜ୍ଞାନର ଶ୍ରେଷ୍ଠ ନିଦର୍ଶନ । ତାଙ୍କଠାରୁ ଏହି ଶଲ୍ୟତନ୍ତ୍ର ବୈଶେଷିକ ଶିକ୍ଷା ଔପଧେନବ, ଔରଭ୍ର, ପୌଷ୍କଳାବତ, ଗୋପୁର ରକ୍ଷିତ, ବୈତରଣ, କରବୀର୍ଯ୍ୟ ସୁଶ୍ରୁତ ଇତ୍ୟାଦି ଋଷିଗଣ ଆହରଣ କରିଥିଲେ ।

ବ୍ରହ୍ମାଙ୍କ ଦ୍ୱାରା ପୃଥକୀକୃତ ହୋଇଥିବା ପଞ୍ଚାୟୁର୍ବେଦ (ବୃକ୍ଷ, ଗଜ, ନର, ଗବ ଓ ଅଶ୍ୱାୟୁର୍ବେଦ) ମଧ୍ୟରୁ ନରାୟୁର୍ବେଦ ସମ୍ବନ୍ଧରେ ଧନ୍ୱନ୍ତରୀ ସୁଶ୍ରୁତ ପ୍ରଭୃତି ଶିଷ୍ୟଗଣଙ୍କୁ ଶିକ୍ଷା ପ୍ରଦାନ କରିଥିଲେ । ନରାୟୁର୍ବେଦକୁ 'ଅଷ୍ଟାଙ୍ଗ ଆୟୁର୍ବେଦ' ମଧ୍ୟ କହନ୍ତି । ଅର୍ଥାତ୍ ଏହାକୁ ଆଠଟି ଅଙ୍ଗରେ ବିଭକ୍ତ କରାଯାଇ, ଯଥା :

(୧) କାୟ ଚିକିତ୍ସା (Medicine), (୨) କୌମାର ଭୃତ୍ୟ (Peadiatrics), (୩) ଶଲ୍ୟ ଚିକିତ୍ସା (Surgery), (୪) ଶାଲାକ୍ୟ (Minor Operation), (୫) ଭୂତବିଦ୍ୟା (Spells & ircentation), (୬) ଅଗଦତନ୍ତ୍ର (Toxicology & Forensic Medicine), (୭) ରସାୟନ ତନ୍ତ୍ର (Rejuvenation) ଏବଂ (୮) ବାଜୀକରଣ ତନ୍ତ୍ର (Sexual invigoration) ।

ଏତଦ୍ ସମ୍ଭୂତ ଚିକିତ୍ସା ସମସ୍ତ ଚିକିତ୍ସାଠାରୁ ଊର୍ଦ୍ଧ୍ୱରେ । ଏହା ପୁରାତନ, ଶାଶ୍ୱତ, ଅନାଦି ଓ ଚିରନ୍ତନ ଅଟେ । ଏହାର ଚିକିତ୍ସା ସିଦ୍ଧାନ୍ତ ଅନ୍ୟାନ୍ୟ ଚିକିତ୍ସାଠାରୁ ଭିନ୍ନ ତଥା ଉନ୍ନତତର ।

"ଯାତ୍ୟୁ ଦୀର୍ଣଂ ଶମଯତି ନାନ୍ୟବ୍ୟାଧିଂ କରୋତି ଯଃ
ସାଚିକିତ୍ସା ନତୁ ଯା ବ୍ୟାଧିଂ ହରତ୍ୟନ୍ୟ ମୁଦୀରଯେତ୍ ।"

ଯାହା ଉଦ୍ଭବ ରୋଗକୁ ଶାନ୍ତ କରେ ଏବଂ ଅନ୍ୟ ରୋଗ ଜନ୍ମାଏ ନାହିଁ ତା'ର ନାମ ହିଁ ଚିକିତ୍ସା ଏବଂ ତାହା କେବଳ ସଫଳ ଔଷଧ ପ୍ରୟୋଗରେ ସମ୍ଭବ ହୁଏ । କିନ୍ତୁ ଯାହା ଗୋଟିଏ ରୋଗକୁ ନଷ୍ଟ କରି ଅନ୍ୟ ରୋଗର କାରଣ ବା ସହାୟକ କାରଣ ହୁଏ ତାହା ଚିକିତ୍ସା ପଦବାଚ୍ୟ ନୁହେଁ ।

ଏହି ଆୟୁର୍ବେଦ ବିଜ୍ଞାନ ଦେବ ପ୍ରଣୀତ । ଅନେକ ଯୁଗ ବିବର୍ତ୍ତନ ପରେ ମଧ୍ୟ ଏହି ପ୍ରାଚ୍ୟ ବିଜ୍ଞାନ ସମ୍ଭୂତ ବେଦୋକ୍ତ ଆୟୁର୍ବେଦ ତା'ର ସଫଳ ଚିକିତ୍ସା ଏବଂ ସେହି ମଙ୍ଗଳମୟ ଧନ୍ୱନ୍ତରୀଙ୍କର ପବିତ୍ର କରୁଣାରୁ ନିତ୍ୟ, ଚିର ଭାସ୍ୱର ତଥା ସମଗ୍ର ଚିକିତ୍ସା ଜଗତର ପଥ ପ୍ରଦର୍ଶକ ହୋଇ ରହିଛି । ତେଣୁ ଏହି "ଧନ୍ୱନ୍ତରୀ ଜୟନ୍ତୀ" ଉତ୍ସବ ଅବସରରେ ସେହି ଅନନ୍ତ ଭଗବାନଙ୍କର ପଦ ବନ୍ଦନ କରୁଛି ।

"ଚତୁର୍ଭୁଜଂ ପୀତବସ୍ତ୍ରଂ ସର୍ବାଳଙ୍କାର ଶୋଭିତଂ
ଧ୍ୟାୟେତ୍ ଧନ୍ୱନ୍ତରୀ ଦେବଂ ସୁରାସୁର ନମସ୍କୃତମ୍
ଅମୃତ କଳସଧାରୀ ବୈଦ୍ୟ ବିଦ୍ୟା ପ୍ରସ୍ତାରୀ
ସୁରଗଣ ସୁଖକାରୀ ଦୈତ୍ୟଦାପହାରି
ମନୁ ଜହିତ ବିଗ୍ରହୀ ସର୍ବରୋଗାପହାରୀ
ହୃଦୟ ଜଳଧି ମଧ୍ୟେ ଭାତୁ ଧନ୍ୱନ୍ତରୀନଃ ।"

ସରକାରୀ ଆୟୁର୍ବେଦ ଚିକିତ୍ସାଧିକାରୀ,
ସୁନ୍ଦରଗଡ଼ ।

# ପ୍ରକୃତି, ବିଭୁ ଚେତନା ଓ କବି ମଧୁସୂଦନ

ଡକ୍ଟର କବିତା ମହାନ୍ତି

ପ୍ରକୃତି ହେଲା ବିଶ୍ୱ ସୃଷ୍ଟି । ଏହା ଜୀବନ, ଜଡ଼ ଓ ଶକ୍ତିର ସମାହାର । ପରିଦୃଶ୍ୟମାନ ବିଶ୍ୱ ବ୍ରହ୍ମାଣ୍ଡ ଓ ମାନବ ସମାଜ ସୃଷ୍ଟିର ବହୁ ପୂର୍ବରୁ ହିଁ ପ୍ରକୃତିର ସୃଷ୍ଟି । ସେ ପ୍ରକୃତି ହେଉଛି, ଅସୀମ ଓ ଅନନ୍ତ । ଆର୍ଯ୍ୟମାନର ଓଁ କାର ଉଚ୍ଚାରଣ ଓ ହରପ୍ପାରୁ ଆବିଷ୍କୃତ ଏକ ପ୍ରସ୍ତର ନାରୀ ମୂର୍ତ୍ତି ଖୋଦିତ କ୍ଷୁଦ୍ର "ଲତିକା"ର ଚିହ୍ନ, ବହିଃ ପ୍ରକୃତି ପୂଜାର ଦୁଇଟି ସଂକେତ ।, ବ୍ରାହ୍ମମୁହୂର୍ତ୍ତର ଶାନ୍ତ-ସ୍ନିଗ୍ଧ ପରିବେଶ, ଆସମୁଦ୍ର ପ୍ରକାଶିତ ନୀଳିମାମୟ ଆକାଶର ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ ତଥା ନବୋଦିତ ସୂର୍ଯ୍ୟଙ୍କ ପ୍ରଥମ ଆଗମନରେ ହିଁ ଆର୍ଯ୍ୟ ଋଷିଙ୍କର 'ଓଁ ତତ୍ ସବିତୁର୍ବରେଣ୍ୟମ୍' ଇତ୍ୟାଦିଯୁକ୍ତ ଉଚ୍ଚାରିତ ଶବ୍ଦାବଳୀ ପ୍ରକାଶ ପାଇଥାଏ ।

ପ୍ରକୃତି ତ୍ରିଗୁଣାତ୍ମିକା ଅଟେ । ଅର୍ଥାତ୍ ସତ୍ତ୍ୱ, ରଜ, ତମ ଗୁଣରେ ବିଦ୍ୟମାନ ଅଟେ । 'ସତ୍ତ୍ୱ, ରଜ ସ୍ତମାସାଂ ସାମ୍ୟାବସ୍ଥା ପ୍ରକୃତିଃ'-ଏହା ସାଂଖ୍ୟ ପ୍ରବଚନ ଭାଷ୍ୟରେ ଲେଖାଯାଇଅଛି ।

ଉପନିଷଦରେ ଲେଖାଯାଇଛି-
"ଉତସ୍ମୈ ସଦୋହାତ ଇତ୍ୟୋତ୍ତ ଶରୀରେ
ସୋମ୍ୟୋ ସପୁରୁଷୋ ଯସ୍ମିନ୍ନେତାଃ
ଷୋଡ଼ଶ କଳା ପ୍ରଭାବନ୍ତୀତି ।"

(ପ୍ରଶ୍ନୋପନିଷଦ-ଦ୍ୱିତୀୟ ଶ୍ଳୋକ)

ବନଗିରିର ମନୋହର ଦୃଶ୍ୟ ନଦୀର କୁଳୁକୁଳୁ ସ୍ୱନ, ପଶୁପକ୍ଷୀଙ୍କର ଆନନ୍ଦ କୋଳାହଳ, ନୀଳ ଆକାଶରେ ମେଘମାଳାର ମନ୍ଦ୍ର ଗର୍ଜନ ଇତ୍ୟାଦି ପ୍ରକୃତିର ଭିନ୍ନ ଭିନ୍ନ ସ୍ୱରୂପ । ବିଶ୍ୱନିୟନ୍ତା ପରମେଶ୍ୱରଙ୍କ ଅପୂର୍ବ ଲୀଳାର ମନୋଜ୍ଞ ପ୍ରକାଶ ରୂପେ ଯୁଗେ ଯୁଗେ ଏ ସବୁ କବି-ଜନମନ ହରଣ କରିବାରେ ସକ୍ଷମ ହୋଇଅଛନ୍ତି ।

ମଣିଷର ସଂକଟ ଓ ସଂଘାତି ସହିତ ବିଭୁବୋଧର ଜନ୍ମ ଓ ବିକାଶ । ବୈଦିକ ସାହିତ୍ୟରେ ବିଭୁବୋଧର ଜନ୍ମ ବିସ୍ମୟରୁ ଓ ଭୟରୁ । ପୂର୍ଣ୍ଣତା ଆତ୍ମଉପଲବ୍ଧିରେ । ପ୍ରାଚୀନ ସାହିତ୍ୟରେ ବିଭୁବୋଧର ବିପୁଳ ପରିଚୟ ପରିଦୃଷ୍ଟ ।

ବଙ୍ଗ ସାହିତ୍ୟରେ ରବୀନ୍ଦ୍ରନାଥ ପ୍ରକୃତିର ପ୍ରତି ଛନ୍ଦେ ଛନ୍ଦେ ଭଗବାନଙ୍କର ଉପସ୍ଥିତି ଅନୁଭବ କରିଛନ୍ତି; ସେହିପରି ମଧୁସୂଦନ ପ୍ରକୃତିରେ ବିଶ୍ୱ ନିୟନ୍ତାଙ୍କର ଅସୀମ ସତ୍ତାର ସନ୍ଧାନ ପାଇଛନ୍ତି । ପ୍ରକୃତି ଓ ପୁରୁଷ, ପରମାତ୍ମା ଓ ଜୀବାତ୍ମା ତାଙ୍କ କାବ୍ୟ ସଂସାରରେ ଏକ ହୋଇଯାଇଛନ୍ତି । ତାଙ୍କ ପାଇଁ ଏହି ସୃଷ୍ଟି ଅମୃତର ଗନ୍ତାଘର । ଭଗବାନଙ୍କର ଅମୃତୋପମ ବାଣୀ, ଉପନିଷଦର ବାଣୀ- "ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ"- ମଧୁସୂଦନଙ୍କ କବିତାର ଅନ୍ତର୍ନିହିତ ପ୍ରତିଧ୍ୱନିତ ମାତ୍ର ।

ଭିକ୍ଟୋରିଆ ଯୁଗର ପୂର୍ବକାଳୀନ ରୋମାଣ୍ଟିକ୍ କବିମାନଙ୍କ ପରି ମଧୁସୂଦନଙ୍କ ଦୃଷ୍ଟିରେ ପ୍ରକୃତି ଚିରନ୍ତନ ଆଧ୍ୟାତ୍ମିକ ସତ୍ୟର ବର୍ଣ୍ଣାଢ୍ୟ ସଙ୍କେତ ରୂପେ ପ୍ରତିଭାତ ହୋଇଛନ୍ତି ।

କବି ବ୍ଲେକ୍ ଯେପରି; "When the sun rises, do you not see a round disc of fire some what like a Guinea ?" ସେହିପରି କବି ମଧୁସୂଦନ ପ୍ରକୃତିରେ ବିଭୁଙ୍କୁ ଦର୍ଶନ କରିଛନ୍ତି । ତାଙ୍କର ପ୍ରତ୍ୟେକ କବିତାରେ ପ୍ରକୃତିରେ ରହିଛି; ସେହି ଅନନ୍ତ ସତ୍ତାଙ୍କର ଅସ୍ତିତ୍ୱ । ଗୋଟିଏ 'ପଦ୍ମ'ରେ ଅନୁଭବ କରିଛନ୍ତି, ସେହି ଈଶ୍ୱରଙ୍କୁ, ପରମସତ୍ତାଙ୍କୁ, 'ଆକାଶ ପ୍ରତି', 'ପଦ୍ମ', 'ନଦୀ ପ୍ରତି', 'ବସନ୍ତ', 'ଗ୍ରୀଷ୍ମ', 'ବର୍ଷା', 'ଶରତ', 'ହେମନ୍ତ', 'ଶିଶିର', 'ପ୍ରଭାତ', ଓ 'ସନ୍ଧ୍ୟା' ଆଦି ପ୍ରକୃତିର ବିଭିନ୍ନ ବିଭବକୁ ନେଇ ରଚିତ ତାଙ୍କ କବିତାରେ ଏକ ଅତୀନ୍ଦ୍ରିୟ ମାନତା ସହିତ ପ୍ରକୃତି ପ୍ରତି ବିମୁଗ୍ଧ ଦୃଷ୍ଟି ସ୍ପଷ୍ଟ ପ୍ରତିଭାତ । ସ୍ଥାନେ ସ୍ଥାନେ ପ୍ରକୃତି ପରମାତ୍ମାଙ୍କ ନିବାସସ୍ଥଳୀ ରୂପେ ଚିତ୍ରିତ ଏବଂ ପରମାତ୍ମା ପ୍ରକୃତିର ଚିତ୍ରକର । କବି ବ୍ଲେକ୍ ସୂର୍ଯ୍ୟୋଦୟରେ କେବଳ ଆଲୋକକୁ ଦେଖୁନଥିଲେ; ସେ ଦେଖୁଥିଲେ ଅନେକ କିଛି, ଯାହା ଅନନ୍ତ, ଅସୀମ ପ୍ରାଣସତ୍ତା । ସେହିପରି କବି ମଧୁସୂଦନ ପଦ୍ମଫୁଲ ଭିତରେ, ଶଙ୍ଖଧ୍ୱନିରେ ଭେଟିଛନ୍ତି; ସେହି ଚିର ଇପ୍ସିତ ଈଶ୍ୱରଙ୍କୁ । "ହିମାଚଳେ-ଉଦୟ-ଉତ୍ସବ" କବିତାରେ ମଧ୍ୟ ସେ ପରମାତ୍ମାଙ୍କ ସତ୍ତାକୁ ଉପଲବ୍ଧି କରିଛନ୍ତି ।

"ନିଃଶେଷରେ ନୈଶତମଃ ବିନାଶି ସତ୍ୱରେ
ରବି ଅବତୀର୍ଣ୍ଣ ପ୍ରାଚୀ-ଆଶା-ଆକାଶରେ ।
ଅରୁଣ କିରଣ ରୂପ ଅତୁଲ୍ୟ ତୁଳିରେ
ଉନ୍ମୀଳିଲା ମହାଚିତ୍ର ନଗେନ୍ଦ୍ର ମୌଳିରେ ।
ଇନ୍ଦ୍ରନୀଳେ ପଦ୍ମରାଗ-ପରାଗ ମିଶାଇ
ଅବା ପଦ୍ମେ ଇନ୍ଦୀବର-ରୁଚିକୁ ଭସାଇ ।
କିବା କିଶଳୟ ରୁଚି ରସାଣି ସିନ୍ଦୁରେ
ରଞ୍ଜିଲା ଗିରିନ୍ଦ୍ରଶିର ମହାପ୍ରଭା-ପୂରେ ।"

ସେ ତାଙ୍କର କଳ୍ପନା ଶକ୍ତି ବଳରେ ଭେଟିଛନ୍ତି ସେହି ଅମୂର୍ତ୍ତ ଭାବଧାରାକୁ । ମଧୁସୂଦନଙ୍କ ମତରେ, "ବିଧାତା ପ୍ରଦତ୍ତ ଶୋଭାନୁଭାବିକା କଳ୍ପନାବୃତ୍ତି ସାହାଯ୍ୟରେ ସୃଷ୍ଟି ନିହିତ ଶୋଭାରେ ନିଗୂଢ଼ ତତ୍ତ୍ୱ ଓ କୌଶଳର ଆସ୍ୱାଦୀକରଣ ହିଁ କବିତ୍ୱ ।"

"ନବ ବସନ୍ତ ଭାବନା" ଓ "ଋଷିପ୍ରାଣେ ଦେବାବତରଣ" କବିତାରେ କବିଙ୍କର ବିଶ୍ୱଚେତନା ହୋଇପଡ଼ିଛି ଆହୁରି ନିବିଡ଼ କବିଙ୍କ ମତରେ: "ଏହି ପରିଦୃଶ୍ୟମାନ ଜଗତ ଗୋଟିଏ ମହାଚିତ୍ର ଏବଂ ଅନନ୍ତ ଜ୍ଞାନମୟ ପରମେଶ୍ୱର ସେହି ମହାଚିତ୍ରର ଅଲୌକିକ ଚିତ୍ରକର ।"

ମଧୁସୂଦନ ନିଜେ ଯେପରି ସାଧକ, ଭକ୍ତ ଓ ଦାର୍ଶନିକ, ତାଙ୍କର ପ୍ରକୃତି ସେହିପରି ଆଧ୍ୟାତ୍ମିକ ସାଧନା, ବିମଳ ଭକ୍ତି ଓ ଦାର୍ଶନିକ ଚିନ୍ତାର ପ୍ରତିମୂର୍ତ୍ତି ଏବଂ ଉଦ୍‌ବୋଧକ ।

ମଧୁସୂଦନ-ସାହିତ୍ୟ ଔପନିଷଦୀୟ ଅନ୍ତର୍ବାଣୀର ଏକ ମନୋଜ୍ଞ ମଧୁଭଣ୍ଡାର ବ୍ୟତୀତ ଅନ୍ୟ କିଛି ନୁହେଁ ।

---

ଦେଉଳ ସାହି,
ଢେଙ୍କାନାଳ ।




ପୁରୀ ବେଳାଭୂମି ଉତ୍ସବର ଉଦ୍‌ଯାପନୀ ଉତ୍ସବରେ ମାନ୍ୟବର ରାଜ୍ୟପାଳ
ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ।

# ଓଡ଼ିଶା ଲାଗି ପ୍ରାକୃତିକ ବିଭବର ଉପଯୋଗ

ଡକ୍ଟର ଦାମୋଦର ଲେଙ୍କା

ସମସ୍ତେ ଅଳ୍ପରୁ ବହୁତ କରିବାକୁ ଚାହାନ୍ତି । ଗଣ୍ଡାଏ ଭଲକରି ଖାଇ, ଖଣ୍ଡେ ଭଲ ପିନ୍ଧି ମଣିଷ ଭଳି ସୁଖ ସ୍ୱାଚ୍ଛନ୍ଦ୍ୟରେ ରହିବାକୁ ଚାହାନ୍ତି । ସେଇଥିପାଇଁ ଏତେ ଯୋଜନା, ଏତେ କାମ । ସମସ୍ତେ ଦୌଡ଼ୁଛନ୍ତି ନିଜର ବିଭବର ଉନ୍ନତି ପାଇଁ । କେହି ସ୍ଥାବର ସମ୍ପତ୍ତି କରି, କେହି ସାହିତ୍ୟ, କେହି ଧର୍ମ, କେହି ସାମାଜିକ କ୍ଷେତ୍ରରେ ଉନ୍ନତି କରି ନିଜର ନାଁ ରଖିଯିବାକୁ । କିନ୍ତୁ ସମସ୍ତଙ୍କ ଭାଗ୍ୟରେ ସବୁ ଜୁଟେନି । ଅନେକ କଥା ଜଣାଥିଲେ ବି ସେ କଥାଟା କାମରେ ରୂପାୟିତ ହୋଇ ନ ପାରୁଥିବାରୁ ଅନେକ ଲୋକ ଲୋଚନ ଗୋଚରକୁ ଆସନ୍ତି ନାହିଁ । ଖାଲି ଆମେ ଦରିଦ୍ର– ଆମ ଦାରିଦ୍ର୍ୟ ଯିବା ଦରକାର–କହି କହି ବୁଲିଲେ କେହି ଶୁଣିବେ ନାହିଁ । ଏଥିପାଇଁ ତ୍ୟାଗ ଓ ପରିଶ୍ରମ ଆବଶ୍ୟକ ।

ଦେଶରେ ଚାରିଆଡ଼େ ଅନୁନ୍ନତ ଅଞ୍ଚଳର ବିକାଶ ପାଇଁ ସଭା, ସମିତି ଚର୍ଚ୍ଚା ବୃଦ୍ଧି ପାଇବାରେ ଲାଗିଛି । ଦେଶ ସ୍ତରରୁ ଆରମ୍ଭ କରି ପଞ୍ଚାୟତ ସ୍ତର ପର୍ଯ୍ୟନ୍ତ । ଭାରତରେ ପୂର୍ବାଞ୍ଚଳ ଓ ତା'ଭିତରେ ଓଡ଼ିଶା ଏକ ଦରିଦ୍ର ରାଜ୍ୟ ବୋଲି ସମସ୍ତେ କହୁଛନ୍ତି । ଓଡ଼ିଶାରେ ଦାରିଦ୍ର୍ୟ ଏବଂ ଏହାର ଦୂରୀକରଣ ପନ୍ଥା ସ୍ଥିର କରିବା ପାଇଁ ସବୁ ବିଶ୍ୱବିଦ୍ୟାଳୟ, କଲେଜ ଓ ଗବେଷଣା ଅନୁଷ୍ଠାନମାନଙ୍କରେ ପ୍ରବଳ ଉଦ୍ୟମ ଜାରି ରହିଛି । ହେଲେ ବେଶୀ ଫଳମିଳୁନାହିଁ କାହିଁକି ? ତା'ର ଗୋଟିଏ କାରଣ ହେଲା– ଯୋଜନାରେ ଯୋଜନାର ଉପଭୋକ୍ତା ଠିକ୍ ଭାବରେ ସାମିଲ୍ ହେଉନାହାନ୍ତି–ବା ସେମାନେ ଭାବିପାରୁନାହାନ୍ତି ଯେ ଯୋଜନାଟି ତାଙ୍କର ଉନ୍ନତି ପାଇଁ । ଯେ ପର୍ଯ୍ୟନ୍ତ ଉପଭୋକ୍ତା ଏହା ନିଜପାଇଁ ଉଦ୍ଦିଷ୍ଟ ବୋଲି ଜାଣି ନିଜକୁ ଏଥିରେ ସାମିଲ ନକରିବ, ସେ ପର୍ଯ୍ୟନ୍ତ ଯୋଜନାଟି କେବଳ ବଡ଼ବଡ଼ିଆଙ୍କ ଭାଷଣରେ ରହିଯିବ । ଦ୍ୱିତୀୟ କଥାହେଲା–ଯେଉଁମାନେ ଗରିବଙ୍କ ପାଇଁ ଯୋଜନା କରୁଛନ୍ତି–ସେମାନେ ଗରିବୀ କ'ଣ ଜାଣିନାହାନ୍ତି, ଜାଣି ପାରୁନାହାନ୍ତି ।

ଆମ ଓଡ଼ିଶା କଥା ଚିନ୍ତା କରାଯାଉ । ଓଡ଼ିଶା ଗରିବ ନୁହେଁ । ଆମେ ଓଡ଼ିଆ, କିନ୍ତୁ ଗରିବ । ଆମ ରାଜ୍ୟ ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ । କିନ୍ତୁ ଏହି ପ୍ରାକୃତିକ ସମ୍ପଦ ଉପଯୋଗ କରି ନିଜର ଦାରିଦ୍ର୍ୟ ଦୂରକରିବା ପାଇଁ ଜ୍ଞାନ, କୌଶଳ କିନ୍ତୁ ଆମ ପାଖରେ ନାହିଁ ? ଆମ ପୂର୍ବପୁରୁଷ ଯୋଖାଥିଲେ, ପୁରୀ–କୋଣାର୍କ ଗଢ଼ିଥିଲେ– ଭାବି ଚାରିଆଡ଼େ ବାହାସ୍ଫୋଟ ମାରିଲେ ମୋ ପେଟ ଭୋକ ମରିବ ନାହିଁ । ମୋ ପାଖରେ ଯାହା ଅଛି ତାହା କିପରି ନେଇ ଆଣି ଥୋଇଲେ ମୋତେ ଆଉ କାହା ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ, ସେଇ ଚିନ୍ତା ଆବଶ୍ୟକ । ମୁଁ କେତୋଟି ସାଧାରଣ ଉଦାହରଣ ଦେବି । ଆମେ ସମସ୍ତେ ଗାଁରୁ । ଆମ ଗାଁର ଉନ୍ନତି ହେଲେ ଆମର ଉନ୍ନତି । ଏଥିପାଇଁ ଭୂ–ସଂସ୍କାର କରିବାକଥା । ହେଲେ କଥାଟା ଏତେ ସହଜ ନୁହେଁ । ଓଡ଼ିଶାର ଅର୍ଥନୀତି କୃଷିର ଅର୍ଥନୀତି । କୃଷି ଅନୁନ୍ନତ–ସେଇ ପୁରୁଣା କାଳିଆ । ଚାଷୀମାନଙ୍କ ମଧ୍ୟରୁ ପ୍ରାୟ ୫୭ ଭାଗ ଚାଷୀଙ୍କ ପାଖରେ ଘରପିଛା ୨୪ ଏକର ଜମିରୁ କମ୍ ଜମି । ନାମମାତ୍ର ଓ କ୍ଷୁଦ୍ରଚାଷୀ–ଜୋତ ପରିମାଣ ମୋଟ ଜୋତ ପରିମାଣର ପ୍ରାୟ ୭୫ ଭାଗ । ଏହି ଜୋତ ଜମି ଗୋଟିଏ ନୁହେଁ । ଏଠି ଖଣ୍ଡେ, ସେଠି ଖଣ୍ଡେ । ହେଲେ ଚକବନ୍ଦୀ ପାଇଁ ସମସ୍ତେ ରାଜି ହେଉନାହାନ୍ତି କାହିଁକି ? ତା'ର ଗୋଟିଏ କାରଣ ହେଲା–ଓଡ଼ିଶା ପ୍ରାକୃତିକ ବିପର୍ଯ୍ୟୟର ରାଜ୍ୟ । ବଢ଼ି, ମରୁଡ଼ି, ବତାସ ପ୍ରତିବର୍ଷ କିଛି ନା କିଛି ଲାଗି ରହିଛି । ବର୍ଷେ ବର୍ଷେ ସବୁଯାକ ବିପଦ ମଧ୍ୟ ଏକାଠି ହୋଇଯାଉଛି । ଓଡ଼ିଶାର ଭୂ–ପ୍ରକୃତି ଏପରି ଯେ, ଏଠି ପ୍ରାୟ ଉଚ୍ଚା ଜମି ୪୫ ଭାଗ, ମଧ୍ୟମ କିସମ ଜମି ୩୨ ଭାଗ ଓ ଖାଲ ଜମି ୨୪ ଭାଗ । ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ଜମି ବେଶୀ ଢ଼ିପ ଖାଲ ନ ହେଲେ ବି କେତେକ ଅଞ୍ଚଳରେ ଲୁଣୀମାଡ଼େ । ସବୁ ଜମିରେ ସବୁ ଫସଲ ହେବନି । ମୁଗ, ବିରି, କୋଳଥ ଓ ବିଆଳି ଧାନ ପାଇଁ ଟିକିଏ ଢ଼ିପ ଜମି ଦରକାର । ମୁଣ୍ଡପିଛା ଜମିମଧ୍ୟ କମ । ତେଣୁ ସମସ୍ତେ ଚାହୁଁଛନ୍ତି ସବୁ କିସମ ଜମି ରହିଲେ ସବୁ ପ୍ରକାର ଫସଲ କରିପାରିବେ । ପରମୁଖାପେକ୍ଷୀ ହେବେନି । ଯଦି ଖାଲ ଜମି ବଢ଼ିରେ ଗଲା, ଢ଼ିପ ଜମିରୁ ସାରଦ ଋତୁରେ କିଛି ଅମଳ ମିଳିଗଲେ, ଖାଲ ଜମିରୁ ରବି ଋତୁରେ ମୁଗ, ବିରି, ଚଣା ପାଇଁ ବନ୍ୟା ହେତୁ କ୍ଷତିପୂରଣ କରିପାରିବେ । ଯଦି ଗୋଟିଏ ଗୋଟିଏ କିସମ ଜମି ଆଦରି ନେବେ ସବୁ ବର୍ଷ ସବୁପ୍ରକାର ଫସଲ ପାଇପାରିବେ ନାହିଁ । ଏଣୁ ଅସୁବିଧା ହେବ । ଦ୍ୱିତୀୟ କଥା ହେଲା ଭାଇଭାଗ ବଣ୍ଟରା । ଚକ ନେଲେ ବି ଭିନ୍ନ ହେଲେ, ଯେମିତି ହେଲେ ବି କିଆରୀ ବଣ୍ଟା ହେବ, ଛୋଟ ଛୋଟ ହେବ । ତେଣୁ ଏଥିରେ ପୁଣି ଲାଭ ବା କ'ଣ ? କିନ୍ତୁ ଯେଉଁ ଅଞ୍ଚଳରେ ଚକବନ୍ଦୀ ହୋଇଗଲାଣି ସେଠିକାର ଲୋକମାନଙ୍କର ଏପରି ମନୋଭାବ ପ୍ରଥମେ ଥିଲା, ବର୍ତ୍ତମାନ କିନ୍ତୁ ବଦଳିଗଲାଣି । ଜମିର ଉତ୍ପାଦକତା ବଢ଼ିଲାଣି । ସେଇମାନଙ୍କଠୁ ଶୁଣିବାକୁ ମିଳୁଛି–ଏକଥା ଆଗରୁ କରିବା ଦରକାର ଥିଲା । ଏଣୁ ଚକବନ୍ଦୀ ସମ୍ପୂର୍ଣ୍ଣ ହେବା ଆବଶ୍ୟକ ।

ବର୍ତ୍ତମାନ ପାହାଡ଼ିଆ ଜିଲ୍ଲା କଥା ବିଚାର କରାଯାଉ। ସେଠିକା, ଡିପ ମଝି ଓ ଖାଲ ଜମି କିସମ ସମୁଦ୍ର ଅଞ୍ଚଳର ଡିପ, ମଝି ଓ ଖାଲ ଜମିଠାରୁ ଅଲଗା। କିଆରୀଗୁଡ଼ିକ ପାହାଚିଆ ପାହାଚିଆ ଓ ଛୋଟ ଛୋଟ। ଯେଉଁ ଚାଷୀ ପାହାଡ଼ ତଳେ ସବୁଯାକ ଜମି ଚକବନ୍ଦୀରେ ନେବ, ତା'ର ମରୁଡ଼ିରେ ଫସଲସବୁ ଯିବ। ତଳପଟେ ଖାଲ ଆଡ଼େ ଯାହାର ଏକ ପ୍ରକାର ଜମି ଥିବ–ତା'ସାଙ୍ଗରେ ବି ସମାନ ହୋଇ ପାରିବ ନାହିଁ। ତେଣୁ ସେବି ଚାହୁଁଛି–ତା'ର ଡିପ, ମଝି ଓ ଖାଲ (ଆଟ୍ ମାଲ ଓ ବାହାଲ) ଜମିରୁ କିଛି କିଛି ଥାଉ। ଗୋଟାଏ ଗଲେ ଆଉ ଗୋଟାକରୁ କିଛି ହେଲେ ମିଳିବତ। ସେ କାହିଁକି ଚକବନ୍ଦୀ ଗ୍ରହଣ କରିବ? ତୃତୀୟ କଥାଟି ହେଲା, କିଆରୀଗୁଡ଼ିକର ପତନର ପାର୍ଥକ୍ୟ। ଏପରିକି ପାଖ ପାଖ ଦୁଇଟି କିଆରୀରେ ସାନ ବଡ଼ ତ ବଡ଼କଥା ନୁହେଁ–ବଡ଼ କଥା ହେଲା ଗୋଟିଏ କିଆରୀ ଖୁବ୍ ଉଚ୍ଚ ଓ ଅନ୍ୟଟି ଖୁବ୍ ନୀଚ। ଯିଏ ଏପରି ଯାଗାରେ ଚକଟିଏ ନେଲା କରିବ କ'ଣ? ଜମି ସମାନ କରିବାକୁ ତା'ପାଖରେ ପଇସା ନାହିଁ। ଏତେ ପରିମାଣରେ ଉଚ୍ଚା ଜମି ଖୋଳି ତଳ ଜମି ପୋତିବା ବି ସମ୍ଭବ ନୁହେଁ କାରଣ ଉପର ଜମି ଖୋଳିଲେ ପଥର ପଡ଼ିଯିବ। ସେଠି ଟୋପାଏ ବି ପାଣି ରହିବ ନାହିଁ, କି ଫସଲ ହେବ? ଏଣୁ ସେ ଚକବନ୍ଦୀ ପାଇଁ ରାଜି ନୁହେଁ? ଯେମିତି ଅଛି ସେମିତି ଥାଉ।

ଏପରି ଅଞ୍ଚଳରେ ଜମି ଉନ୍ନୟନ କାମ ଏକାନ୍ତ ଆବଶ୍ୟକ। ବିଭିନ୍ନ ବିଷୟରେ ଛାଡ଼ ସରକାର ଦେଉଛନ୍ତି। ସାର, ମଞ୍ଜି, ଯନ୍ତ୍ରପାତି, ଟ୍ରାକ୍ଟର, ମାଛ, ଗଛ ସବୁଥିରେ ଛାଡ଼ ରହିଛି। ଏହି ଛାଡ଼ ବାବଦ ଯେତିକି ପଇସା ସରକାର ଖର୍ଚ୍ଚ କରୁଛନ୍ତି–ସେଇ ପଇସାରେ ଏସବୁ ଜମି ଉନ୍ନୟନ କରାଯାଇ ପାରନ୍ତା। ମୋ ମତରେ ବେଶୀ ଉପକାର ମିଳନ୍ତା। କେଉଁଠି କିଆରୀ ସମାନ, କେଉଁଠି ବଡ଼ ବନ୍ଧ ଓ ହିଡ଼ ଭାଙ୍ଗି ଛୋଟ କରିବା, କେଉଁଠି ହିଡ଼ ପକେଇ ପାଣି ବୋହି ନଯିବା ପାଇଁ ବ୍ୟବସ୍ଥା କରିବା, ଉପର ମୁଣ୍ଡ ପାଣିକୁ ବାନ୍ଧିରଖି ତାକୁ ଛୋଟ ଛୋଟ ଗାଡ଼ିଆରେ ଭର୍ତ୍ତିକରି ଏମେ ପାହାଡ଼ ଉପର ତଳକୁ ଆଣି ବ୍ୟବହାର କରିବା ବ୍ୟବସ୍ଥା କରିବା ଦରକାର। ଏଥିପାଇଁ ଗ୍ରାମ୍ୟ ଉନ୍ନୟନ କମିଟି କରି ସେମାନଙ୍କୁ ସେ କାମ କରିବା ଦାୟିତ୍ୱ ଦେଲେ ଶୀଘ୍ର ହୁଅନ୍ତା ଓ ଅଳ୍ପ ପଇସାରେ ବି ହୋଇପାରନ୍ତା। ଏଥିପାଇଁ ଶିକ୍ଷା ଆବଶ୍ୟକ। ସେଇ ଚେତନା ଆବଶ୍ୟକ। କେଉଁ ଗାଁରେ କ'ଣ ଦରକାର, ସେଇ ଅନୁସାରେ ତଳୁ ଉପରକୁ ଯୋଜନା କରିବା ଦରକାର। ବର୍ତ୍ତମାନ ଉପରୁ–ତଳକୁ ଯୋଜନା ଅନେକ ଯାଗାରେ କାମ ଦେଉନି। ଏହା ବାଟମାରଣା ପାଇଁ ବାଟ ଖୋଲି ଦେଉଛି।

ଅନ୍ୟ କଥାଟି ହେଲା–ମୁଁ ଯାହା ଉତ୍ପାଦନ କରିବି ତାକୁ ନେବକିଏ? ମୁଁ ଯଦି ତାକୁ ଶାଗ–ମାଛ ବିକିଲା ଭଳି ବୁଲେଇ ବିକିବି–ମୋତେ ପଇସା ମିଳିବ କେମିତି. ଚାଷତ ଶିଳ୍ପ ନୁହେଁ ଯେ ସବୁବେଳେ ଖର୍ଚ୍ଚ ଅନୁପାତରେ ଉତ୍ପାଦନ ଅନୁପାତ ଠିକ୍ ରହୁଥିବ। ଉତ୍ପାଦିତ ପଦାର୍ଥର ଉପଯୁକ୍ତ ଦର ମୋତେ ଆବଶ୍ୟକ। ସରକାରୀ ଚାକିରିଆଙ୍କ ଦରମା ଦରକ ନାହିଁ। ତାଙ୍କ ଦରମା କମିଯାଉନି, ବରଂ ବଢ଼ୁଛି। ପଟା ଭଲ ହେଲା ଭଲ ଫସଲ ହେଲା–ଦାମ କମିଗଲା–ଖର୍ଚ୍ଚ ବି ଉଠିଲାନି। ପାଗ ଖରାପ ହେଲା–ଫସଲ ହେଲାନି–ମୋର ମୂଳ ବି ବୁଡ଼ିଗଲା। ମୁଁ ପିଲାଙ୍କୁ ଚଳେଇବି କେମିତି? ଏଥିପାଇଁ ମୋତେ ଦରକାର ଫସଲର କ୍ଷେତ୍ରଫଳ ଅନୁସାରେ ସ୍ଥାୟୀ ଆଦାୟ। ଏ ଯୋଜନା ଶୀଘ୍ର କାର୍ଯ୍ୟକାରୀ ହେଉ। ଚାଷୀ ବେପାରୀଙ୍କ ଶୋଷଣା ନ ହେଉ। ତା'ହେଲେ ସେ ତା'ର ବିତ୍ତର ଉପଯୁକ୍ତ ବିନିଯୋଗ କରିବ।

ଅନ୍ୟ କଥାଟି ହେଲା–ମୋ ରାଜ୍ୟର ଫସଲ ମୋ ରାଜ୍ୟରେ ନିୟୋଜିତ ହେଉ। ସୋରିଷ, ଚିନାବାଦାମ କଥା ବିଚାର କରାଯାଉ। ଆମରି ସୋରିଷ ଆମଠାରୁ କିଣିନେଇ ଅନ୍ୟ ରାଜ୍ୟରେ ତେଲ ଡିଆରି କରି ଟିଣରେ ଭର୍ତ୍ତିକରି ମୋତେ ଆଣି ୫ ଟଙ୍କା ପଦାର୍ଥକୁ ୫୦ ଟଙ୍କାରେ ବିକିବେ। ମୋ ଝାଳବୁହା ପରିଶ୍ରମ ଉପାର୍ଜିତ ଫସଲ ତ ନେଇଥିଲେ, ଏବେ ପୁଣି ମୋତେ ଶୋଷିନେଲେ ମୋରି ପଦାର୍ଥ ମୋତେ ଦେଇ।

ଆଗେ ପ୍ରତ୍ୟେକ ଗାଁରେ କେତେ କେତେଟା ଘଣା ଥିଲା। ଏବେ ଆଉ ଘଣା ନାହିଁ। ପିଲାଙ୍କୁ ପଚାରିଲେ–ଏ କ'ଣ ବୋଲି ଓଲଟା ପଚାରିଲେଣି। ମୁଁ ଯେ ସେଇ ଘଣା ବସାଇବା କଥା କହୁଛି–ତା ନୁହେଁ–ପ୍ରତି ଗାଁରେ ଛୋଟ ଛୋଟ ତେଲ କଳ ବସୁ। ସେଇ ଅଞ୍ଚଳର ତୈଳବୀଜ ସେଇଠି ପେଡ଼ା ହୋଇ ଅନ୍ୟ ରାଜ୍ୟକୁ ବିକ୍ରୟ ହେବାକୁ ଯାଉ। ଚିନାବାଦାମ କଥା–ଓଡ଼ିଶାର ଚିନାବାଦାମ ସବୁ ଓଡ଼ିଶାରେ ତେଲ ହେଉ। ସେ ଗୁଜୁରାଟ, ରାଜସ୍ଥାନକୁ ଯାଇ ପୁଣି ଦ୍ୱାରେ ପଶି ମୋ ପାଖକୁ ନଆସୁ। ନଡ଼ିଆ ତେଲ–ମୋ ବାରି ନଡ଼ିଆକୁ ନେଇ କଲିକତାରେ ପେଡ଼ି ମାର୍କାମାରି ମୋତେ ପୁଣି ବିକିଲେ। ସବୁ କଥା ସେମିତି. ମୋ ରାଜ୍ୟରେ କୃଷିଭିତ୍ତିକ ଶିଳ୍ପ ଗଢ଼ି ନ ଉଠିବାର କାରଣ ମୋ ଗୋଡ଼କୁ ମୋ ପଡ଼ୋଶୀମାନେ ୩୦୦ ବର୍ଷ ଧରି ଟାଣି ଧରିଲେ। ମୋ ହାଡ଼ଗୋଡ଼ ହାଣି ମୋତେ ମାଦଳ କରିଦେଲେ। ମୋ ପାଟିରେ ତାଙ୍କ ଭାଷା ପୂରେଇ ପାଟି ବନ୍ଦ କରିଦେଲେ। ମୁଁ ଉଠିବି କେମିତି? ମୁଁ ବାଧହୋଇ ପଡ଼ି ରହିଲି। ମୁଁ ଟିକିଏ ଉଠି ଅନେଇଲା ବେଳକୁ ମୋ ମୁଣ୍ଡରେ ଆଉ ପାହାରେ।

ସବୁଠାରୁ ବଡ଼ ପ୍ରାକୃତିକ ବିଭବ ହେଲା–କ୍ଷିତି, ଜମିବାଡ଼ି–ମାଟି, ଏହାରି ଉପରେ ବଣ–ଜଙ୍ଗଲ, ଖଣି, ନଦନଦୀ–ଗଛ, ମାଛ, ଶିକ୍ଷା, ଦୀକ୍ଷା। ଏହାରି ଲୋଭରେ ଶାଗରବେଳ ଡସ୍ତ କରିଗଲେ ଗଙ୍ଗାଠାରୁ ଗୋଦାବରୀ। ଅଶୋକ ଆସିଥିଲେ କଳିଙ୍ଗ ଜୟ କରିବାକୁ। ଆଲେକ୍‌ଜାଣ୍ଡର ଆକ୍ରମଣ କରିଥିଲେ ଭାରତ। ଚୀନ–ଭାରତ ଯୁଦ୍ଧ। ଭାରତ–ପାକିସ୍ତାନ ଯୁଦ୍ଧ। ଦି ଶାଗରର କହିଆ–ଠ ହଗାହଣି, ହାଇକୋର୍ଟ। ଅପ, ତେଜ, ବ୍ୟୋମ ମରୁତର ସଂଯୋଗରେ କ୍ଷିତିର ସଦୁପଯୋଗ। ଆଜିର ଆହ୍ୱାନ।

ମୋର ପ୍ରାକୃତିକ ବିଭବର ଉପଯୁକ୍ତ ବ୍ୟବହାର ପାଇଁ ମୋର ଜ୍ଞାନ ନାହିଁ। ରାଉରକେଲା, ତାଳଚେର କାରଖାନା ଚଳାଇବାକୁ ଫିଟର ମଧ ବାହାରୁ ଆଣିବାକୁ ପଡୁଛି। ଆମ ରାଜ୍ୟରେ ତାଲିମ ନେଇ ସେମାନଙ୍କୁ କାମରେ ଲଗାଇଲେ ଆମ ରାଜ୍ୟରେ ଆମ ଯୁବ

ଶକ୍ତି ବ୍ୟବହୃତ ହୋଇପାରନ୍ତା । ମୁଁ ପାନ ଦୋକାନ କରିବି ପଛେ–ନିଜେ ଦୈହିକ ପରିଶ୍ରମ କରି ନିଜ ହାତରେ କିଛି କରିବି ନାହିଁ–ମୁଁ ଖାଲି ତତ୍ତ୍ୱାବଧାନ କରିବି । ଦାୟିତ୍ୱ ନେବି ନାହିଁ । ଏ ମନୋଭାବର ମୋର ପ୍ରାକୃତିକ ବିଭବର ବିନିଯୋଗ ଅନ୍ୟମାନେ ନିଶ୍ଚୟ କରିବେ । ମୋତେ ତାଙ୍କର ଅଧସ୍ତନ କରି ଆହୁରି କେତେ ଯୁଗ ରଖିବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ମୁଁ ସବାପଛରେ ପରାଧୀନ ହେଲି । ମୋ ପରାଧୀନତା ସବା ପଛରେ ଯିବ । ସେତେବେଳକୁ ମୁଁ ଥିଲେତ !!
ଚାର୍ବାକ ନୀତି ହେଲା–

'ଯାବତ୍ ଜୀବେତ୍ ସୁଖଂ ଜୀବେତ୍
ଋଣଂ କୃତ୍ୱା ଘୃତଂ ପିବେତ୍' ।

ମୁଁ ମୋର ଉନ୍ନତି ପାଇଁ ଏତେ ଋଣ କଲିଣି ଯେ ଆଉ ଋଣ ନ ଆଣିଲେ ସେ ଋଣ ସୁଝିପାରୁନି । ମୋ ମୁଣ୍ଡଉପରେ ବର୍ଷକୁ ପ୍ରାୟ–୪,୫୦୦ ଟଙ୍କାର ଋଣ ବାବଦ ଟଙ୍କା ସୁଝିବି କେମିତି, କାମରେ ଲଗେଇଲେ ସିନା ସେଥିରୁ ଲାଭ ବାହାରନ୍ତା । ବାଟରେ ଏତେ ଫାଟ ମେଲା ହୋଇଛି ଯେ ମୋ ପାଖରେ ସେ ଋଣ ପହଞ୍ଚି ପାରିଲାନି । ଏଥିରେ ମୋର ପ୍ରାକୃତିକ ବିଭବ ଉପଯୋଗ କିମିତି ହେବ ? ମୁଁ ନିଜ ବୁଦ୍ଧିରେ ବାଟ ଖୋଲିବାକୁ ସେ ଯେଉଁ ବାଟ ଦେଖାଇବ ସେଇ ବାଟରେ ମୁଁ ଯିବି । ଯିଏ ବାଟ ଦେଖାଇଲା– ତା'ର ଲାଭ ତ ନିଶ୍ଚୟ ନେଲା, ମୋ ବୁଦ୍ଧି ବିବେକର ବୃଦ୍ଧି ବିକାଶ ହେଲା କେଉଁଠି ?

ମୋ ଗାଁରେ ଏତେ ପ୍ରକାର ଫସଲ କିସମ ଅଛି ଯେ–କହିଲେ ନସରେ । ମୁଁ ସମସ୍ତଙ୍କୁ ଦଉଛି–ସେମାନଙ୍କଠୁ କିଛି କିଛି ଆଣୁଛି । ମୁଁ ତାଙ୍କୁ ଯୁଗ ଯୁଗ ଧରି ସାଇତି ରଖିଛି–ସେ ମୋର ଆଶା, ଭରସା ଐତିହ୍ୟ–ମୋ ବିଜ୍ଞାନ–ଅନୁଭୂତିର ବାହାଦୁରୀ । ଆପଣମାନେ ମୋତେ ଆଜି କହୁଛନ୍ତି–ଏଗୁଡ଼ାକ କିଛିନୁହେଁ–ସବୁ ଫୋପାଡ଼ି ଦିଅ–ନୂଆ ନୂଆ କିସମ ଆମଠୁ ନିଅ । ଆମକୁ ନ ପଚାରି କାହାକୁ ବାଣ୍ଟନା । ତୁମେ ଯେତେ ଉତ୍ପାଦନ କରିବ, ଆମେ ସବୁ ନେଇଯିବୁ–ତୁମକୁ ଅଧିକ ପଇସା ଦେବୁ । ହେଲା– ଏଥିରେ କିଛିଦିନ ଚଳିଯିବ ଭଲରେ । ଯେତେବେଳେ ତୁମେ ମୋତେ ସେ କିସମର ବିହନଟି ନଦେବ–ମୁଁ ଚଳିବି କେମିତି– ସେତେବେଳକୁ ମୋ ପାଖରେ କିଛି ନଥିବ–ମୋ ଓଳିଆ– ମୋ ମରେଇ ଖାଲି । ମୁଁ ଭିକ ଥାଳି ଧରି ତମ ପଛେ ପଛେ ବୁଲିବି ସିନା । ନାଁ, ମୋର ଦରକାର ନାହିଁ । ମୁଁ ମୋର ବିଭବରେ ଚଳିବି, ମୋ ହିଡ଼ମାଟି ହିଡ଼ରେ ନଦି ଦି ପଇସାରୁ ୪ ପଇସାର କରିବି ପଛେ ତମଠୁ କୁହୁକ ମନ୍ତ୍ର ନେଇ ରାତାରାତି ବଡ଼ ହେବି ନାହିଁ । ତୁମ ସୁନା କୁରାଢ଼ୀ ତୁମେ ରଖ । ମୋ ଲୁହା କୁରାଢ଼ିଟି ମୋ ପାଖରେ ଥାଉ । ମୁଁ ଏହାକୁ ପକେଇ, ବେଣ୍ଟଲଗେଇ ମୋ ବାଟ ନିଶ୍ଚୟ ଦେଖି ଆଗକୁ ଯିବି । ମୋତେ 'ମୁଁ' ହେବାକୁ ସୁବିଧା ଦିଅ ।

ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର ।

# ଜନସାଧାରଣଙ୍କ ପାଇଁ ସ୍ୱାସ୍ଥ୍ୟ ସେବା

ଡଃ ରାମଚନ୍ଦ୍ର ରାଉତ

'ସ୍ୱାସ୍ଥ୍ୟ ସେବା' ମୁଖ୍ୟତଃ ରୋଗ ପ୍ରତିଷେଧକ ଉପରେ ପର୍ଯ୍ୟବସିତ । କୌଣସି ରୋଗର ପ୍ରତିଷେଧକ ପାଇଁ ଯାହା ଖର୍ଚ୍ଚ ହୁଏ ତା'ର ଚିକିତ୍ସା ପାଇଁ ତା'ଠାରୁ ବହୁଗୁଣ ଅଧିକ ଖର୍ଚ୍ଚ ଲାଗିଥାଏ । ପରନ୍ତୁ ଭାରତପରି ଏକ ଦରିଦ୍ର ଓ ବିକାଶୋନ୍ମୁଖୀ ଦେଶ ପାଇଁ 'ସ୍ୱାସ୍ଥ୍ୟ ସେବା' ଯେତେକ ଦୁଷ୍ପ୍ରାପ୍ୟ ଓ ଅତ୍ୟଧିକ ବ୍ୟୟ ବହୁଳ ରୋଗର ଚିକିତ୍ସାଭିମୁଖୀ ନହୋଇ ରୋଗର ନିରାକରଣ ବା ପ୍ରତିରୋଧ ନିମିତ୍ତ ଉଦ୍ଦିଷ୍ଟ ହେବା ବିଧେୟ ।

ନିମ୍ନର ଦୁଇଟି ସଂକ୍ଷିପ୍ତ ଉଦାହରଣରୁ ପ୍ରତିଷେଧକ କିପରି ଚିକିତ୍ସା ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ତାହା ଉପଲବ୍ଧି କରିହେବ ।

'ଆମ୍ବ ଗଣ୍ଠି ବାତ' (RHD) ଓ ତଦ୍ ଜନିତ ହୃଦ୍‌ରୋଗ ଆମ ଦେଶରେ ଅଧିକ ପରିମାଣରେ ପରିଦୃଷ୍ଟ । ଏପରି ଏକ ଦୀର୍ଘ ଓ ଅକର୍ମଣ୍ୟକାରୀ ରୋଗର ମୁଖ୍ୟ କାରଣ କଣ ? ଏହା ହେଉଛି ଛୋଟବେଳେ ଓ ପିଲାମାନଙ୍କର ବଢ଼ିବା ବୟସରେ 'ଷ୍ଟ୍ରେପ୍ଟୋ କୋକସ୍ ଭିରିଡାନ୍‌ସ' ନାମକ ଜୀବାଣୁର ସଂକ୍ରମଣ । ଏହା ସାଧାରଣତଃ ଗଳାଦରଜ ହୋଇ ଟନ୍‌ସିଲ୍ ଗ୍ରନ୍ଥି ପ୍ରଦାହ । ପରିସ୍ରା ସଂକ୍ରମଣ କିମ୍ବା ଆଣ୍ଠୁ ଗଣ୍ଠି ଦରଜ ହୋଇ ବାତ ଆକାରରେ ଆରମ୍ଭ ହୁଏ । ଆମ୍ବୁ ଗଣ୍ଠି ବାତ ସହ ଜ୍ୱର ରହିଲେ ଏହାକୁ 'ରିଉମାଟିକ୍ ଫିଭର' (Rheumatic Fever) କୁହାଯାଏ । ଏହାର ଏକ ଖରାପ ଦିଗ ହେଲା, ଏହି [illegible] ରୋଗଟି ଅଳ୍ପ ଚିକିତ୍ସା ବା ବିନା ଚିକିତ୍ସାରେ କମିଯାଏ ମାତ୍ର ପରବର୍ତ୍ତୀ ସମୟରେ ସାରାଜୀବନ ପାଇଁ ପିଲାଟିକୁ ପଙ୍ଗୁକରି ପକାଏ । ଯେଉଁ ପିଲାମାନେ ସଠିକ୍ ଚିକିତ୍ସା ଗ୍ରହଣ କରିଥାଆନ୍ତି ସେମାନଙ୍କର ଭବିଷ୍ୟତରେ ଏତଦ୍‌ଜନିତ କୌଣସି କ୍ଷତିକାରକ ଅବସ୍ଥା ସୃଷ୍ଟି ହୋଇ ନଥାଏ । ମାତ୍ର ଅନ୍ୟମାନେ ସାରା ଜୀବନ ପାଇଁ ଆମ୍ବ ଗଣ୍ଠି ଜନିତ ହୃଦ୍‌ରୋଗର ଶିକାର ହୁଅନ୍ତି । ଏହି ରୋଗ ନିମିତ୍ତ ସଦାସର୍ବଦା ମୂଲ୍ୟବାନ୍ ଔଷଧପତ୍ର ସହିତ ନିୟମିତ ଚିକିତ୍ସା, ଯାଞ୍ଚ ଇତ୍ୟାଦି ଦରକାର ପଡ଼େ । ବ୍ୟୟ ବହୁଳ ହୃଦ୍‌ରୋଗ ଚିକିତ୍ସା ମଧ୍ୟ ସମୟ ସମୟରେ ଜରୁରୀ ହୋଇ ପଡ଼େ । କୋଟି [illegible] ହୃଦ୍‌ରୋଗ ଚିକିତ୍ସାରେ ଲାଗୁଥିବା ଖର୍ଚ୍ଚରେ [illegible] ଆକ୍ରାନ୍ତ ପିଲାଙ୍କୁ ମୂଳରୁ ସହଜରେ [illegible] ପାରନ୍ତା । ମାତ୍ର ଆମମାନଙ୍କର ଏ [illegible] ଏପରି କରାଯାଇ ପାରୁନାହିଁ ।

ତଥାପି, ଶାରୀରିକ ପରିଶ୍ରମ ରହିତ ବା ସ୍ୱଳ୍ପ ଶାରୀରିକ ପରିଶ୍ରମ ଯୁକ୍ତ, ଧୂମପାନ ଓ ମଦ୍ୟପାନ ଅଭ୍ୟାସଯୁକ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରାୟତଃ ପରିଲକ୍ଷିତ ହେଉଥିବା ହୃଦ୍‌ରୋଗ (Ischemic Heart Disease) ଅନ୍ୟ ଏକ ଉଦାହରଣ ରୂପେ ନିଆଯାଇ ପାରେ । ଏହା ପ୍ରଥମେ ପ୍ରଥମେ ସାମାନ୍ୟ ଛାତିରେ ସାମାନ୍ୟ ଦରଜ ବା କଷ୍ଟ ରୂପେ ଦେଖାଯାଏ ଯାହାକୁ I.C.S. (Intermediate Coronary Syndrome) କୁହାଯାଏ ଏବଂ ଏହା ଅଳ୍ପ ଦିନପରେ ଶେଷରେ ମାରାତ୍ମକ ହୃଦ୍‌ରୋଗ (Heart attack ବା Acutemyocardial Infarction)ର ରୂପ ନିଏ । ଏଥି ପାଇଁ ବ୍ୟୟବହୁଳ ବାଇପାସ୍ ଶଲ୍ୟ ଚିକିତ୍ସା କରିବାକୁ ପଡ଼ିଥାଏ । ଉଲ୍ଲେଖ ଯୋଗ୍ୟ ଯେ ଅଧୁନା ମନ୍ତ୍ରୀ ଓ ଉଚ୍ଚ ପଦସ୍ଥ ଅଫିସର୍ ବାଇପାସ୍ ଶଲ୍ୟ ଚିକିତ୍ସା ଦ୍ୱାରା ଜୀବନ ଯାପନ କରୁଛନ୍ତି । ଏହିସବୁ ଚିକିତ୍ସା ବିଦେଶରେ ହେଉଥିବାରୁ ଏଥିପାଇଁ ଅଜସ୍ର ବୈଦେଶିକ ମୁଦ୍ରା ଦେଶରୁ ବ୍ୟୟ ହେଉଛି । ଦିଲ୍ଲୀ, ବମ୍ବେ, ମାଡ୍ରାସ୍ ଓ ଆମ ରାଜ୍ୟର କଟକରେ ମଧ୍ୟ ଏହି ଶଲ୍ୟ ଚିକିତ୍ସାର ବ୍ୟବସ୍ଥା ହେଲାଣି । ଏଥିପାଇଁ ବିଦେଶ ତୁଳନାରେ କିଛି କମ୍ ଖର୍ଚ୍ଚ ହେଉଥିଲେ ମଧ୍ୟ ତାହା ଆମ ଦେଶ ବା ରାଜ୍ୟ ପକ୍ଷରେ ଯଥେଷ୍ଟ ଅଧିକ । ଏଥିପାଇଁ ବ୍ୟକ୍ତି ବିଶେଷକୁ ବା ପରିବାରକୁ ଅତ୍ୟଧିକ ଅର୍ଥଭାର ସହ୍ୟ କରିବାକୁ ପଡ଼ିଥାଏ ।

ଏହି ଉଭୟ ଓ ପ୍ରାୟତଃ ଜୀବନ ନାଶକାରୀ ବ୍ୟାଧିର ସ୍ୱାସ୍ଥ୍ୟ ଶିକ୍ଷା ଏବଂ ନିୟମିତ ସ୍ୱାସ୍ଥ୍ୟ ପରୀକ୍ଷା ଦ୍ୱାରା କେମିତି ଅତ୍ୟଧିକ ଖର୍ଚ୍ଚବିନା ପ୍ରତିରୋଧ କରିହେବ । [illegible] ହୃଦ୍‌ରୋଗ [illegible] ଚିକିତ୍ସାରେ ଲାଗୁଥିବା ଅର୍ଥରେ [illegible] ହୃଦ୍‌ରୋଗ ଦ୍ୱାରା ଆକ୍ରାନ୍ତ ହେବାର ସମ୍ଭାବନା [illegible] ସେମାନଙ୍କର ଉପଯୁକ୍ତ [illegible] ଶାରୀରିକ ପରିଶ୍ରମ [illegible] ଏବଂ ଧୂମପାନ [illegible] ମଦ୍ୟପାନ [illegible] ହୃଦ୍‌ରୋଗକୁ [illegible]

[illegible]

[illegible]

ମ୍ୟାଲେରିଆ । ମସ୍ତିଷ୍କ ଜ୍ୱରପରି ପ୍ରାଣ ନାଶକ ବ୍ୟାଧିମାନଙ୍କର ତୁରନ୍ତ ଚିକିତ୍ସା ଇତ୍ୟାଦି ଦ୍ୱାରା ସମାଜରେ ଦେଖା ଯାଉଥିବା ପ୍ରାୟ ତିନି ଚତୁର୍ଥାଂଶ ରୋଗ ପ୍ରତିଷେଧକ କରିପାରିବ ।

ରାଜ୍ୟ ସରକାର ପରିବାର ନିୟନ୍ତ୍ରଣ କ୍ଷେତ୍ରରେ ଅତ୍ୟନ୍ତ ପ୍ରଶଂସନୀୟ କାର୍ଯ୍ୟ କରୁଅଛନ୍ତି । ଶିଶୁ ଓ ମାତାମାନଙ୍କର ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ସହ ଏହି ପରିବାର କଲ୍ୟାଣ କାର୍ଯ୍ୟକ୍ରମ ଓ ତତ୍‌ସହିତ ସାର୍ବଜନୀନ ଟୀକା ପ୍ରଦାନ ସ୍ୱାସ୍ଥ୍ୟରକ୍ଷା ଦିଗରେ ଚମତ୍କାର କାର୍ଯ୍ୟମାନ କରିଅଛି । ଏହା ଜନସଂଖ୍ୟା ବିସ୍ଫୋରଣ ନିୟନ୍ତ୍ରଣ, ଶିଶୁ ମୃତ୍ୟୁ ହାର ଓ ମାତୃ ମୃତ୍ୟୁ ହାରକୁ କମାଇବା ସହିତ ଶିଶୁ ରୋଗ ଓ ଗର୍ଭ ସମସ୍ୟାର ରୋଗମାନଙ୍କର ନିୟନ୍ତ୍ରଣ ମଧ୍ୟ କରିପାରିଛି ।

ଅଧୁନା ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମ ଜିଲ୍ଲାସ୍ତରରେ ଜିଲ୍ଲାମୁଖ୍ୟ ଚିକିତ୍ସାଧିକାରୀ, ପରିବାର କଲ୍ୟାଣ ଜିଲ୍ଲା ଉପମୁଖ୍ୟ ଚିକିତ୍ସାଧିକାରୀ ଓ ବ୍ଲକ୍ ସ୍ତରରେ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଚିକିତ୍ସାଧିକାରୀମାନଙ୍କ ଦ୍ୱାରା ପରିଚାଳିତ । ଏଥିରେ କେତେକ ପରିବର୍ତ୍ତନ ଜରୁରୀ ହୋଇପଡ଼ିଛି । ଉକ୍ତ ଅଧିକାରୀମାନେ ଅନ୍ୟ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ ଯଥା–ରୋଗୀ ଚିକିତ୍ସା, ଆଶୁ ଚିକିତ୍ସା ଓ ପ୍ରଶାସନ ଇତ୍ୟାଦି କାର୍ଯ୍ୟରେ ସଦାସର୍ବଦା ନିୟୋଜିତ ରହି ସମସ୍ତ ସମୟ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ନିମିତ୍ତ ଦେବା ସମ୍ଭବପର ନୁହେଁ । ତେଣୁ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ପରିବାର କଲ୍ୟାଣ ନିର୍ଦ୍ଦେଶକ (DFW)ଙ୍କ ମୁଖ୍ୟତ୍ୱରେ ପ୍ରତ୍ୟେକ ଜିଲ୍ଲାରେ ଜଣେ ଜିଲ୍ଲା ପରିବାର କଲ୍ୟାଣ ଅଫିସର (DFWO) ଯାହାକି CDMOଙ୍କ ସହ ସମାନ କ୍ଷମତା ସମ୍ପନ୍ନ ଓ ଉପଖଣ୍ଡମାନଙ୍କରେ SDFWO ଯାହାକି SDMOଙ୍କ ସହ ପଦବୀଯୁକ୍ତ ଓ PHCରେ PHC FWO ଯାହାକି PHCMOଙ୍କ ସହିତ ସମାନ ପଦବୀଯୁକ୍ତ ହୋଇପାରିଲେ ଏହି କାର୍ଯ୍ୟକ୍ରମ ଆହୁରି ଭଲ ରୂପେ ସମ୍ପାଦନ କରାଯାଇ ପାରିବ ।

ବର୍ତ୍ତମାନ ଜନସାଧାରଣ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ପ୍ରତି ଅଧିକ ଆକୃଷ୍ଟ ହେବାର ଲକ୍ଷ୍ୟ କରାଯାଉଛି । ପ୍ରାୟତଃ ଦମ୍ପତ୍ତି ନିଜର ପରିବାରକୁ ଦୁଇରୁ ତିନି ସନ୍ତାନ ମଧ୍ୟରେ ସୀମିତ ରଖିବାର ପରିଲକ୍ଷିତ ହେଉଛି । ଖୁବ୍ କମ୍ ସଂଖ୍ୟକ ଦମ୍ପତ୍ତିଙ୍କର ତିନିରୁ ଅଧିକ ସନ୍ତାନ ଅଛନ୍ତି । ଗ୍ରାମାଞ୍ଚଳର ଅଶିକ୍ଷିତ ଜନସାଧାରଣ ମଧ୍ୟ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ପ୍ରତି ଆଗ୍ରହ ପ୍ରକାଶ କରୁଛନ୍ତି ଓ ସେମାନଙ୍କର ସନ୍ତାନ ସନ୍ତତି ସୀମିତ ଥିବାର ପରିଦୃଷ୍ଟ ହେଉଛି ।

ବର୍ତ୍ତମାନ ଅନୁସୃତ ହେଉଥିବା ସ୍ତ୍ରୀ ବନ୍ଧ୍ୟା କରଣ କ୍ଷୁଦ୍ର ବନ୍ଧ୍ୟା କରଣ (Minilap), ପୁରୁଷ ବନ୍ଧ୍ୟା କରଣ ଅସ୍ତ୍ରୋପଚାର ଓ ଗର୍ଭପାତ ପଦ୍ଧତି ଇତ୍ୟାଦିରେ ଦେଖା ଦେଉଥିବା ଅସୁବିଧା ଓ ଅସଫଳତା କମ୍ କରିବା ପାଇଁ ଏ ଦିଗରେ ଗବେଷଣା ଜରୁରୀ ହୋଇ ପଡ଼ିଛି । ଅସ୍ତ୍ରୋପଚାରର ବିଫଳତା ଓ ଅସ୍ତ୍ରୋପଚାରର ପରବର୍ତ୍ତୀ ଅସୁବିଧା ଯୋଗୁଁ ଅନେକ ସମୟରେ ଲୋକମାନେ ଏଥିପ୍ରତି ବିମୁଖ ହେଉଛନ୍ତି । ଗବେଷଣା ଦ୍ୱାରା ଓ ପଦ୍ଧତି ସମୂହକୁ ତ୍ରୁଟିଶୂନ୍ୟ କରିପାରିଲେ ଏସବୁ ଆହୁରି ଲୋକ ପ୍ରିୟ ହୋଇ ପାରନ୍ତା । ପୁରାତନ କାଳରୁ ଚଳି ଆସୁଥିବା ଗର୍ଭ ନିରୋଧ ପଦ୍ଧତି ଯଥା– ନିମ ଓ ଜଡ଼ାତେଲର ଉପଯୋଗ । କେତେକ ଗୁଳ୍ମଲତାର ପତ୍ର ଓ ହୋମିଓପ୍ୟାଥି ଔଷଧର ବ୍ୟବହାର ଦ୍ୱାରା କିପରି ଗର୍ଭ ନିରୋଧ କରିହେବ ସେ ସମ୍ବନ୍ଧରେ ମଧ୍ୟ ଗବେଷଣା କରିବା ଦରକାର । ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯିବା ଦ୍ୱାରା କାର୍ଯ୍ୟପ୍ରଣାଳୀରେ ନାନାପ୍ରକାର ବାଧାବିଘ୍ନ ସମସ୍ତ ସମୟରେ ପହଞ୍ଚୁଛି ଓ ଅନେକ କ୍ଷେତ୍ରରେ ଲକ୍ଷ୍ୟହାସଲ ହୋଇ ପାରୁ ନାହିଁ । ଅଧିକାଂଶ କ୍ଷେତ୍ରରେ ଏହିସବୁ ସଙ୍ଗଠନଗୁଡ଼ିକ ରାଜନୈତିକ ଭିତ୍ତିମୂଳକ ଓ କେତେକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ଦିଗ୍‌ଦର୍ଶନ ହୀନ ଯୁବକମାନଙ୍କର ସମାରୋହରେ ଗଠିତ ହୋଇଥାଏ ।

ପ୍ରାଥମିକ ସ୍ତରରୁ ଗ୍ରାମପଞ୍ଚାୟତମାନଙ୍କୁ ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ପ୍ରବେଶ କରାଇଲେ ବରଂ ଏହା ବିଶେଷ ଫଳପ୍ରଦ ହେବ । ଗ୍ରାମମାନଙ୍କରେ ବିଶୁଦ୍ଧ ପାନୀୟ ଜଳ ଯୋଗାଣ, ପରିମଳ ବ୍ୟବସ୍ଥା, ନାଳ ନର୍ଦ୍ଦମା ତଥା ପାଇଖାନା ନିର୍ମାଣ, କୂପ ପୁଷ୍କରିଣୀ ତଥା ଜଳାଶୟମାନଙ୍କର ପୁନରୁଦ୍ଧାର, ପରିଷ୍କାର ତଥା ବିଶୋଧନ ସ୍ୱାସ୍ଥ୍ୟ ପରିଦର୍ଶକ ତଥା ପରିଦର୍ଶିକାମାନଙ୍କ ତତ୍ତ୍ୱାବଧାନରେ ମ୍ୟାଲେରିଆ ଜ୍ୱର ଓ ତରଳଝାଡ଼ାର ଚିକିତ୍ସା କେନ୍ଦ୍ର ଇତ୍ୟାଦିର ପରିଚାଳନା ଏହାର ଅନ୍ତର୍ଭୁକ୍ତ ହେବା ଦରକାର ।

ଭେଷଜ ମହାବିଦ୍ୟାଳୟମାନଙ୍କୁ ବ୍ୟୟ ନିମିତ୍ତ ଅଧିକ ପାଣ୍ଠି ଯୋଗାଣ ତଥା ବିଶେଷଜ୍ଞ ଓ ଅତି ବିଶେଷଜ୍ଞ ବିଭାଗଗୁଡ଼ିକର ଆଧୁନିକୀକରଣ ଚିକିତ୍ସାର ମାନ ବୃଦ୍ଧି ଓ ଶିକ୍ଷା ପ୍ରଦାନ ନିମିତ୍ତ ନିହାତି ଜରୁରୀ ମାତ୍ର ସ୍ୱାସ୍ଥ୍ୟ ସେବାର ପ୍ରମୁଖ କ୍ଷେତ୍ର ଯାହାକି ସାଧାରଣ ବ୍ୟକ୍ତିମାନଙ୍କର ସ୍ୱାସ୍ଥ୍ୟରକ୍ଷା ନିମିତ୍ତ ଉଦ୍ଦିଷ୍ଟ ତାହାକୁ ଦୃଷ୍ଟିରୁ ଏଡ଼ାଇଦେବା ଆଦୌ ଉଚିତ ନୁହେଁ ।

---

ଚିକିତ୍ସା କେନ୍ଦ୍ର ଅଧିକାରୀ,
ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର, ତମପଡ଼ା,
ବାଙ୍କୀ, କଟକ-୭୫୪୦୦୮ ।

◆

# ଦୁଇବର୍ଷର ରାୟଗଡ଼ା ଜିଲ୍ଲା : ଏକ ମୂଲ୍ୟାୟନ

ଶ୍ରୀ ରାଜେନ୍ଦ୍ରନାଥ ଜେନା

ରାୟଗଡା ଜିଲ୍ଲା । ଶୁଭାରମ୍ଭ ହୁଏ ଅକ୍ଟୋବର ୨, ୧୯୯୨ରେ । ଏଭଳି ଛୋଟ ଛୋଟ ଜିଲ୍ଲା ଗଠନ ପଛରେ ଅଛି ଏକ ମହତ ଉଦ୍ଦେଶ୍ୟ । ଏହା ହେଉଛି ଯେ, ପ୍ରଶାସନ ଜନସାଧାରଣଙ୍କର ଆହୁରି ନିକଟବର୍ତ୍ତୀ ହେଲେ ଜନସାଧାରଣଙ୍କ ଅଭାବ ଅସୁବିଧାଗୁଡ଼ିକର ଶୁଣାଣି ଓ ପ୍ରତିକାର ସୁବିଧାଜନକ ହୋଇପାରିବ । ଫଳତଃ, ଦେଶର ଶାସନରେ ଲୋକଙ୍କ ସମ୍ପୃକ୍ତି ଓ ଯୋଗଦାନ ସମ୍ଭବ ହୋଇପାରିବ । ଠିକ୍ ଏହି ଉଦ୍ଦେଶ୍ୟ ନେଇ ଗଠିତ ରାୟଗଡା ଜିଲ୍ଲାର ଆଜି ପୂରିଯାଇଛି ଦୁଇ ବର୍ଷ । ତେଣୁ ଏହି ପରିପ୍ରେକ୍ଷୀରେ ଜିଲ୍ଲା ଗଠନର ଉଦ୍ଦେଶ୍ୟ କେତେଦୂର ସଫଳ ହୋଇପାରିଛି ଏବଂ ଲୋକଙ୍କ ମନର ଆଶା ଆକାଂକ୍ଷା ଓ ତାହାର ପରିପୂରଣ କିଭଳି ହୋଇଛି, ତାହାର ଏକ ବାସ୍ତବଧର୍ମୀ ଓ ସଠିକ ମୂଲ୍ୟାୟନର ଆବଶ୍ୟକତା ନିଶ୍ଚିତ ଭାବେ ଜରୁରୀ ।

ସ୍ୱପ୍ନ ଅନେକ, କିନ୍ତୁ ସଫଳ କମ୍ । ପୁଣି ଏ ଅଞ୍ଚଳର ଲୋକଙ୍କ ସାମାଜିକ ଓ ଅର୍ଥନୈତିକ ଅବସ୍ଥା ଦୁର୍ବଳ । ଶିକ୍ଷା ଓ ସଚେତନତାର ଅଭାବ ସାଙ୍ଗକୁ କିଛି କର୍ମଚାରୀଙ୍କର କର୍ତ୍ତବ୍ୟନିଷ୍ଠା ସନ୍ତୋଷଜନକ ନୁହେଁ । ଫଳତଃ, ଏ ସମସ୍ତ ପ୍ରତିକୂଳତା ହିଁ ବହୁ ସ୍ଥଳେ ଅନେକ ସ୍ୱପ୍ନ ସଫଳ ନହୋଇ ପାରିବାର କାରଣ ତଥା ବହୁ ଆଶା ପୂରଣ ନହୋଇ ପାରିବାର କାରଣ ବି ପ୍ରତୀୟମାନ ହୁଏ । ତଥାପି ଏତିକି ନିଃସନ୍ଦେହରେ କୁହାଯାଇ ପାରିବ ଯେ ଜିଲ୍ଲାଟି ଛୋଟ ହୋଇଥିବାରୁ ଲୋକେ ଅତି ସହଜରେ ଜିଲ୍ଲାସ୍ତରୀୟ ଅଧିକାରୀଙ୍କ ନିକଟରେ ନିଜ ନିଜର ଅଭାବ ଅସୁବିଧାର ଉପସ୍ଥାପନ କରିପାରୁଛନ୍ତି ଏବଂ ପ୍ରଶାସନ ମଧ୍ୟ ବିଭିନ୍ନ ଯୋଜନାର କାର୍ଯ୍ୟକାରିତା ଅତି ଦକ୍ଷତାର ସହ ତଦାରଖ କରିବା ସମ୍ଭବ ହୋଇପାରୁଛି । ଅତଏବ ଜିଲ୍ଲା ପ୍ରଶାସନ ଅତି ସଫଳତାର ସହ ଜନସାଧାରଣଙ୍କ ନିକଟବର୍ତ୍ତୀ ହୋଇପାରିଛି ।

ରାୟଗଡା ଜିଲ୍ଲାର ଜନସଂଖ୍ୟା ୭,୧୪,୫୯୯ । ସେଥି ମଧ୍ୟରୁ ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କ ସଂଖ୍ୟା ଯଥାକ୍ରମେ ମୋଟ ଜନସଂଖ୍ୟାର ୫୯ ଶତାଂଶ ଓ ୧୪ ଶତାଂଶ । ଏମାନଙ୍କ ଆର୍ଥିକ ଅବସ୍ଥା ଅତି ଖରାପ । ସାରା ଜିଲ୍ଲାର ପରିବାରଗୁଡ଼ିକ ମଧ୍ୟରୁ ପ୍ରାୟ ଶତକଡ଼ା ୭୦ରୁ ଅଧିକ ପରିବାର ଦାରିଦ୍ର୍ୟର ସୀମାରେଖା ତଳେ ଅଛନ୍ତି । ଅଧିକାଂଶ ଜିଲ୍ଲାବାସୀ ଜୀବିକା ନିର୍ବାହ ପାଇଁ କୃଷି ଉପରେ ନିର୍ଭରଶୀଳ । କିନ୍ତୁ ଏ ଜିଲ୍ଲାର କୃଷି ମୁଖ୍ୟତଃ ବୃଷ୍ଟିପାତ ଉପରେ ନିର୍ଭର କରିଥାଏ । ଫଳତଃ କୃଷିର ଆୟ ଜୀବିକା ନିର୍ବାହ ପାଇଁ ଯଥେଷ୍ଟ ହୁଏନି । ଶିକ୍ଷା ଓ ସଚେତନତାର ଅଭାବ, ଗମନାଗମନଜନିତ ଅସୁବିଧା ତଥା ଦାରିଦ୍ର୍ୟର ତୀବ୍ରତା ଯୋଗୁଁ ଅନେକ ଯୋଜନାର ସଫଳ ରୂପାୟନ ସମ୍ପୂର୍ଣ୍ଣ ଆଶାଜନକ ହେବାରେ ଅସୁବିଧା ରହିଥିଲେ ହେଁ ଜିଲ୍ଲା ଗଠନର ଏହି ଦୁଇବର୍ଷ ମଧ୍ୟରେ କିଛି ଉଲ୍ଲେଖନୀୟ କାର୍ଯ୍ୟ ନିଶ୍ଚିତ ଭାବେ କରାଯାଇ ପାରିଛି ।

ଜିଲ୍ଲାରେ ଗତ ୧୯୯୨-୯୩ ଏବଂ ୧୯୯୩-୯୪ ବର୍ଷରେ ବିଭିନ୍ନ ଯୋଜନାରେ ଯଥାକ୍ରମେ ୧୭ କୋଟି ୭୦ ଲକ୍ଷ ଟଙ୍କା ଏବଂ ୩୪ କୋଟି ୦୫ ଲକ୍ଷ ଟଙ୍କା ବିନିଯୋଗ କରାଯାଇଥିବା ବେଳେ ୧୯୯୪-୯୫ ବର୍ଷରେ ବିଭିନ୍ନ ଯୋଜନାର କାର୍ଯ୍ୟକାରିତା ପାଇଁ ୫୩ କୋଟି ଟଙ୍କାର ଏକ ଯୋଜନା ଜିଲ୍ଲା ଉନ୍ନୟନ ବୋର୍ଡ଼ ମଞ୍ଜୁର କରିଛନ୍ତି । ଚଳିତ ବର୍ଷ କୃଷି, ମୃତ୍ତିକା ସଂରକ୍ଷଣ, ଗ୍ରାମ୍ୟ ଉନ୍ନୟନ ଓ ଦାରିଦ୍ର୍ୟ ଦୂରୀକରଣ ଯୋଜନା, ଜଳସେଚନ, ଗ୍ରାମ୍ୟ ବୈଦ୍ୟୁତିକରଣ, ଶିକ୍ଷା, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ, ପାନୀୟ ଜଳ ଯୋଗାଣ, ବୃକ୍ଷରୋପଣ ତଥା ଆଦିବାସୀ ଓ ହରିଜନ ଶ୍ରେଣୀର ଲୋକଙ୍କ କଲ୍ୟାଣାର୍ଥେ ଉଦ୍ଦିଷ୍ଟ ଯୋଜନାଦି କାର୍ଯ୍ୟକାରୀ କରିବା ଦିଗରେ ଅଧିକ ଗୁରୁତ୍ୱ ଦିଆଯାଉଛି ।

ଜିଲ୍ଲା ଗଠନ ପରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପ୍ରାୟ ୯,୮୦୦ ପରିବାରଙ୍କର ଅର୍ଥନୈତିକ ଉନ୍ନତି ପାଇଁ ଜିଲ୍ଲା ଉନ୍ନୟନ ସଂସ୍ଥା ଏବଂ ରାୟଗଡ଼ା ଓ ଗୁଣୁପୁରରେ ଥିବା ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥାମାନଙ୍କ ଦ୍ୱାରା ସେମାନଙ୍କୁ ବିଭିନ୍ନ ଅର୍ଥ ଉପାର୍ଜନକ୍ଷମ କାର୍ଯ୍ୟର ଅନ୍ତର୍ଭୁକ୍ତ କରାଯାଇଛି । ଏଥିପାଇଁ ସମ୍ପୃକ୍ତ ପରିବାରମାନଙ୍କୁ ଋଣ ବାଦ୍ ଦେଇ ସବ୍‌ସିଡି ଆକାରରେ ୨.୭୦ କୋଟି ଟଙ୍କା ଦିଆଯାଇଛି । ଏ ବାବଦରେ ପରିବାର ପିଛା ସବ୍‌ସିଡ଼ି ଓ ଋଣ ଆକାରରେ ପ୍ରାୟ ୫,୬୦୦ ଟଙ୍କା ବିନିଯୋଗ କରାଯାଇଛି । ପୁଣି ଗରିବ ଲୋକଙ୍କର ବାସଗୃହ ସମସ୍ୟାର ସମାଧାନ ପାଇଁ ଇନ୍ଦିରା ଆବାସ ଯୋଜନାରେ ୫୬୨ଟି ବାସଗୃହ ନିର୍ମାଣ ପାଇଁ ୯୩ ଲକ୍ଷ ଟଙ୍କା ବିନିଯୋଗ କରାଯାଇଛି ।

ବର୍ତ୍ତମାନ ଜିଲ୍ଲାରେ ସରକାରଙ୍କ ବିଭିନ୍ନ ସଂସ୍ଥା ଦ୍ୱାରା ଛୋଟ ଛୋଟ ଜଳସେଚନ ଯୋଜନା ମାଧ୍ୟମରେ ପ୍ରାୟ ୧୧ ହଜାରରୁ ଊର୍ଦ୍ଧ୍ୱ ଏକର ଜମିରେ ଜଳସେଚନର ସୁବିଧା ହୋଇପାରିଛି । ଜିଲ୍ଲାରେ କାର୍ଯ୍ୟକାରୀ କରାଯାଉଥିବା ବଡ଼ନାଳ ମଧ୍ୟମ ଜଳସେଚନ ଯୋଜନା ନିର୍ଦ୍ଧାରିତ ସମୟର ବହୁ ପୂର୍ବରୁ ଏବଂ ନିର୍ମାଣାଧୀନ ଥିବା ଅବସ୍ଥାରେ ପରୀକ୍ଷାମୂଳକ ଭାବେ ଗତ ବର୍ଷ ୫,୦୦୦ ଏକର ଜମିକୁ ପାଣି ଯୋଗାଇ ପାରିଛି । ଏହି ଯୋଜନା ଏବଂ

ନିର୍ମାଣାଧୀନ ଥିବା ସିଲଟିଗୁଡ଼ା ଓ ବାନିଯୋଡ଼ି କ୍ଷୁଦ୍ର ଜଳସେଚନ ଯୋଜନାଗୁଡ଼ିକୁ ଆସନ୍ତା ବର୍ଷ ମଧ୍ୟରେ ସମ୍ପୂର୍ଣ୍ଣ କରାଯିବା ପାଇଁ ବିହିତ ପଦକ୍ଷେପମାନ ନିଆଯାଉଛି । ଏହି ବିଭିନ୍ନ ଜଳସେଚନ ଯୋଜନା ନିର୍ମାଣ ଓ କାର୍ଯ୍ୟକାରୀ କରିବା ଦିଗରେ ଏହି ଦୁଇ ବର୍ଷ ମଧ୍ୟରେ ପ୍ରାୟ ୧୦ କୋଟି ଟଙ୍କା ବିନିଯୋଗ କରାଯାଇଛି । ଏହାଛଡ଼ା ୧୭ଟି ଉଠା ଜଳସେଚନ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ରାଜ୍ୟ ଉଠା ଜଳସେଚନ ନିଗମ ଓ ଓଡ଼ିଶା ଆଗ୍ରୋ ଇଣ୍ଡଷ୍ଟ୍ରିଜ୍ କର୍ପୋରେସନ୍ ଜରିଆରେ ୬୫ ଲକ୍ଷ ଟଙ୍କା ବିନିଯୋଗ କରାଯାଇ ପ୍ରାୟ ୮୫୦ ଏକର ଜମିକୁ ଜଳସେଚନର ବ୍ୟବସ୍ଥା କରାଯାଇ ପାରିଛି । କ୍ଷୁଦ୍ର ଏବଂ ନାମମାତ୍ର ଚାଷୀମାନଙ୍କ ଜମିରେ Million Well ଯୋଜନା ଅନ୍ତର୍ଗତ ଆଲୋଚ୍ୟ ଦୁଇ ବର୍ଷ ମଧ୍ୟରେ ୮୭୬ଟି କୂପ ଖନନ କରାଯାଇଥିବା ବେଳେ ଆଦିବାସୀ ଓ ହରିଜନ ଶ୍ରେଣୀଭୁକ୍ତ ଅତ୍ୟନ୍ତ ଗରିବ ଚାଷୀଙ୍କୁ ବିନା ମୂଲ୍ୟରେ ୯୫ଟି ପାଣି ପମ୍ପ ଯୋଗାଇ ଦିଆଯାଇଛି । ଜିଲ୍ଲା ଗଠନ ପରେ ପାନୀୟ ଜଳର ଅଭାବ ଥିବା ୭୫୦ଟି ଗ୍ରାମରେ ନଳ କୂପମାନ ନିର୍ମାଣ କରାଯାଇଛି ଏବଂ ଚଳିତ ବର୍ଷ ଶେଷ ସୁଦ୍ଧା ଅଧିକ ୭୫୦ଟି ଗ୍ରାମରେ ନଳ କୂପ ବସାଯିବା କାର୍ଯ୍ୟକ୍ରମ ରହିଛି । ଏ ଦିଗରେ ଆମର ନିର୍ଦ୍ଧାରିତ ଯୋଜନାନୁଯାୟୀ ଚଳିତ ବର୍ଷ ଶେଷ ସୁଦ୍ଧା ପ୍ରତି ଗ୍ରାମରେ ଅନ୍ତତଃ ଗୋଟିଏ ନଳ କୂପର ବ୍ୟବସ୍ଥା କରିବା କାର୍ଯ୍ୟକ୍ରମ ସ୍ଥିର ରହିଛି ।

ଗତ ଦୁଇ ବର୍ଷ ମଧ୍ୟରେ ବିଭିନ୍ନ ସରକାରୀ ସଂସ୍ଥାମାନଙ୍କ ଦ୍ୱାରା ଜିଲ୍ଲାର ସମସ୍ତ ପଞ୍ଚାୟତ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ସକ୍ରିୟ ସହଯୋଗରେ ଏକ ବ୍ୟାପକ ବୃକ୍ଷ ରୋପଣ କାର୍ଯ୍ୟକ୍ରମ ହାତକୁ ନିଆଯାଇ ବତିଶ ହଜାର ଏକର ଜମିରେ ବୃକ୍ଷ ରୋପଣ କରାଯାଇ ଯଥେଷ୍ଟ ପାଣ୍ଠି ବିନିଯୋଗ କରାଯାଇଛି ।

ଜିଲ୍ଲା ଗଠନ ପରେ ଗମନାଗମନର ସୁବିଧା ପାଇଁ ସରକାରଙ୍କ ବିଭିନ୍ନ ସଂସ୍ଥା ଦ୍ୱାରା ଜିଲ୍ଲାରେ ଦଶ କୋଟି ଟଙ୍କା ବିନିଯୋଗ ହୋଇଛି । ଚଳିତ ବର୍ଷ ୧୦ କୋଟି ଟଙ୍କା ଅଟକଳରେ ନିର୍ମିତ ବଂଶଧାରା ସେତୁ ଓ ଦୁଇ କୋଟି ତେଷଠି ଲକ୍ଷ ଟଙ୍କା ଅଟକଳରେ ନିର୍ମିତ ବଡ଼ନାଳ ପୋଲର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇ ପାରିଛି । ପୁଣି ରାଜ୍ୟ ସରକାର ଓ ଭାରତୀୟ ରେଳବାଇର ମିଳିତ ଉଦ୍ୟମରେ ରାୟଗଡ଼ା ସହରର ଜନସାଧାରଣଙ୍କ ସୁବିଧା ପାଇଁ ୪,୯୭,୦୦,୦୦୦ ଅଟକଳରେ ନିର୍ମାଣାଧୀନ ଓଭର ବ୍ରିଜ୍ କାମ ତ୍ୱରାନ୍ୱିତ କରାଯାଇ ଚଳିତ ଆର୍ଥିକ ବର୍ଷରେ ସମ୍ପୂର୍ଣ୍ଣ କରିବା ପାଇଁ ପଦକ୍ଷେପ ନିଆଯାଉଛି ।

ଜିଲ୍ଲା ଅନ୍ତର୍ଗତ କାଶୀପୁର ବ୍ଲକ୍ ଏକ ଅତ୍ୟନ୍ତ ଅନୁନ୍ନତ ଅଞ୍ଚଳ । ଏହାର ସର୍ବାଙ୍ଗୀନ ବିକାଶ ପାଇଁ ଏକ ଆନ୍ତର୍ଜାତୀୟ ସଂସ୍ଥା International Fund for Agricultural Development (IFAD) ଆନୁକୂଲ୍ୟରେ ଓଡ଼ିଶା ଆଦିବାସୀ ଉନ୍ନୟନ ସଂସ୍ଥା ୧୯୮୮ ମସିହାରୁ ଏହି ବ୍ଲକରେ କାର୍ଯ୍ୟ ଆରମ୍ଭ କରିଛନ୍ତି । ଏ ଦିଗରେ ବିନିଯୋଗ କରିବା ପାଇଁ ୫୨ କୋଟି ଟଙ୍କା ଉଦ୍ଦିଷ୍ଟ । ଜିଲ୍ଲା ଗଠନ ପରେ ଏହାର ବିକାଶ କାର୍ଯ୍ୟକ୍ରମର ମନ୍ଥର ଧାରାକୁ ତ୍ୱରାନ୍ୱିତ କରାଯାଇଛି । ବିଭିନ୍ନ ପ୍ରଶାସନିକ ଅସୁବିଧା ସତ୍ତ୍ୱେ ଏହି ସଂସ୍ଥା ଚଳିତ ବର୍ଷରେ ଅନ୍ତତଃ ଅଧିକ ୧୪ କୋଟି ଟଙ୍କା ବିନିଯୋଗ କରିବା ପାଇଁ ପଦକ୍ଷେପ ନେଉଛନ୍ତି । ସମ୍ପୃକ୍ତ ଅଞ୍ଚଳର ଡଙ୍ଗରରେ ଏହି ସଂସ୍ଥା ମାଧ୍ୟମରେ ବ୍ୟାପକ କୃଷିଭିତ୍ତିକ ଜଙ୍ଗଲ (Agro Forestry) କାର୍ଯ୍ୟକ୍ରମ ହାତକୁ ନିଆଯାଇ ୭,୭୦୦ ଏକର ଜମିରେ ଏହା କାର୍ଯ୍ୟକାରୀ ହୋଇ ଆଦିବାସୀ ସମ୍ପ୍ରଦାୟର ଚାଷୀମାନଙ୍କୁ ରୟତି ସୂତ୍ରରେ ପଟ୍ଟା ଦିଆଯାଇଛି । ପୁଣି ଏଭଳି ଜମିର ପାଦ ଦେଶରେ ପାରମ୍ପରିକ ଚାଷ କରି ୩୦° ଗଡ଼ାଣିଆ ସ୍ଥାନ ଯାଏ ଜମିରେ ରୋପିତ ବିଭିନ୍ନ ଫଳଗଛ ଓ ଜାଳେଣି କାଠ ଗଛର ରକ୍ଷଣାବେକ୍ଷଣ ହେଉଛି । ଏଭଳି ବ୍ୟାପକ ଭାବେ କୃଷି ଭିତ୍ତିକ ଜଙ୍ଗଲ ସୃଷ୍ଟିର ଯୋଜନା କାର୍ଯ୍ୟକାରୀ କରିବା ସମଗ୍ର ରାଜ୍ୟରେ ପ୍ରଥମ । ସରକାରଙ୍କ ନିର୍ଦ୍ଦେଶରେ ଏହି ଜମିକୁ ପ୍ରଥମେ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କ ମିଳିତ ନାମରେ ରୟତି ପଟ୍ଟା ଦିଆଯାଉଥିଲା । କିନ୍ତୁ ପରବର୍ତ୍ତୀ ନିର୍ଦ୍ଦେଶ ଅନୁସାରେ ଏହି ଜମିକୁ କେବଳ ସ୍ତ୍ରୀ ନାମରେ ରୟତୀ ପଟ୍ଟା ଦିଆଯାଉଛି । ଏହି ଦୁଇ ବର୍ଷ ମଧ୍ୟରେ କୃଷି ଭିତ୍ତିକ ଜଙ୍ଗଲ ଯୋଜନାରେ ଉନ୍ନତ କରାଯାଇଥିବା ୩,୯୭୫ ଏକର ଜମିକୁ ୧,୫୬୭ ପରିବାର ମଧ୍ୟରେ ରୟତୀ ସୂତ୍ରରେ ପଟ୍ଟା ଦିଆଯାଇଛି । ଏହି କାର୍ଯ୍ୟକ୍ରମକୁ ଜିଲ୍ଲାର କଲ୍ୟାଣସିଂହପୁର, ବିଷମ କଟକ ଓ ମୁନିଗୁଡ଼ା ବ୍ଲକରେ ଥିବା ଡଙ୍ଗରିଆ କନ୍ଧ ଅଧ୍ୟୁଷିତ ଅଞ୍ଚଳ ଓ ଗୁଣୁପୁର ବ୍ଲକର ଲାଞ୍ଜିଆ ସଉରା ବସବାସ କରୁଥିବା ଅଞ୍ଚଳରେ ପର୍ଯ୍ୟାୟକ୍ରମେ କାର୍ଯ୍ୟକାରୀ କରାଯିବା ପାଇଁ ପଦକ୍ଷେପ ନିଆଯିବ ।

ଆଗରୁ ଜିଲ୍ଲାର ଆଇନ ଶୃଙ୍ଖଳାରେ କେତେକ ଅବନତି ଦେଖା ଦେଉଥିଲା । ନୂଆ ଜିଲ୍ଲା ଗଠନ ପରେ ଦୃଢ଼ ଆଇନର ଶାସନ ଲାଗି ବଳିଷ୍ଠ ପଦକ୍ଷେପ ନେବା ପରେ ବର୍ତ୍ତମାନ ଆଇନ ଶୃଙ୍ଖଳାରେ ଆଶାତୀତ ଉନ୍ନତି ଘଟିଛି ।

ଗରିବ ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ପାଇଁ ରାଜ୍ୟ ସରକାର ଚଳିତ ବର୍ଷଠାରୁ ରାଜ୍ୟରେ ଦେଶୀ ମଦ ଭାଟି ଓ ବିକ୍ରିକୁ ନିଷେଧ କରିଛନ୍ତି । ସରକାରଙ୍କ ଏହି ସାଧୁ ପଦକ୍ଷେପକୁ ପ୍ରାୟ ସମସ୍ତ ଜିଲ୍ଲାବାସୀ ସ୍ୱାଗତ କରିଛନ୍ତି । କିନ୍ତୁ କେତେକ ସ୍ୱାର୍ଥାନ୍ୱେଷୀ ଲୋକ ଏହି ପଦକ୍ଷେପରୁ ଲାଭ ଉଠାଇବା ପାଇଁ ଅନବରତ କୁପ୍ରଚେଷ୍ଟା କରୁଛନ୍ତି । ସେମାନଙ୍କର ଏହି ବେଆଇନ କାରବାରକୁ ସରକାରଙ୍କ ଅବକାରୀ ବିଭାଗ ଓ ପୋଲିସ୍ ବିଭାଗକୁ ଜିଲ୍ଲାରେ କର୍ମରତ ବିଭିନ୍ନ ମହିଳା ସମିତି, ଯୁବକ ସଂଘ ଓ ଅନ୍ୟାନ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଅତ୍ୟନ୍ତ ଉତ୍ସାହର ସହ ସହାୟତା କରୁଛନ୍ତି । ଏହି ବେଆଇନ କାରବାରକୁ ବନ୍ଦ କରିବା ପାଇଁ ଏକ ଉଲ୍ଲେଖନୀୟ ପଦକ୍ଷେପ ସ୍ୱରୂପ ରାଜ୍ୟରେ ପ୍ରଥମ ଥର ପାଇଁ ଏହି ଜିଲ୍ଲାର ତିନି ଜଣ ଆଦିବାସୀ ମହିଳାଙ୍କୁ ସ୍ୱତନ୍ତ୍ର ପୋଲିସ୍ ଅଧିକାରୀ (Special Police Officer) ରୂପେ ନିଯୁକ୍ତି ଦିଆଯାଇଛି । ଏହି ତିନି ଜଣ ଆଦିବାସୀ ମହିଳା ଯଥା ଶ୍ରୀମତୀ ସୁମନ ଖୋଡ଼ିଆ, ଶ୍ରୀମତୀ ସବାଇ ମାଝୀ ଓ ଶ୍ରୀମତୀ ଅଞ୍ଜାରୀ ମାଝୀ ବର୍ତ୍ତମାନ ମୁଖ୍ୟମନ୍ତ୍ରୀଙ୍କ ଆଦିବାସୀ ପରାମର୍ଶଦାତା ବୋର୍ଡରେ ସଭ୍ୟା ଅଛନ୍ତି । କାଶୀପୁର ବ୍ଲକ୍ ଅଞ୍ଚଳରେ ବେଆଇନ ଭାଟି ମଦ କାରବାର ବନ୍ଦ କରିବା ଓ ଏ ଅଞ୍ଚଳର ମହିଳାମାନଙ୍କର ବହୁବିଧ ଉନ୍ନତି ପାଇଁ ଏହି ତିନୋଟି ମହିଳା ଯେଉଁ କାର୍ଯ୍ୟ କରୁଛନ୍ତି, ତାହା ବାସ୍ତବରେ ପ୍ରଶଂସନୀୟ । ଏମାନଙ୍କ ବ୍ୟତୀତ ଏ ଜିଲ୍ଲାର

ଅନ୍ୟାନ୍ୟ ଅନେକ ମହିଳା ସମିତି ଓ ଯୁବକ ସଙ୍ଘର ସଭ୍ୟମାନେ ଗ୍ରାମାଞ୍ଚଳରେ ବେଆଇନ ମଦ କାରବାର ରୋକିବା ଦିଗରେ ଅନବରତ ଚେଷ୍ଟା କରୁଛନ୍ତି ।

ଜିଲ୍ଲା ଶିକ୍ଷିତ ବେକାର ଲୋକଙ୍କୁ ଲାଭଜନକ କାମଧନ୍ଦା ଯୋଗାଇ ଦେବା ପାଇଁ ଅନେକ ଆତ୍ମନିଯୁକ୍ତି ଯୋଜନା ପ୍ରଣୟନ କରାଯାଇଛି । ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନାରେ ଗତ ବର୍ଷ ଓ ଏ ବର୍ଷରେ ମୋଟ ୨୫୦ ଜଣଙ୍କୁ ଅନ୍ତର୍ଭୁକ୍ତ କରାଯାଉଛି । ଏହାଛଡ଼ା ପ୍ରତ୍ୟେକ ପଞ୍ଚାୟତ ଅଞ୍ଚଳରେ ବିଭିନ୍ନ ଉନ୍ନତ ବିହନ ଓ ଫଳଗଛ ଚାରା ଉତ୍ପାଦନ କରିବା ପାଇଁ ଦୁଇଜଣ ଶିକ୍ଷିତ ଯୁବକଙ୍କୁ ଦୁଇ ଏକର ଜମି ଦେବାର ବନ୍ଦୋବସ୍ତ କରାଯାଇଛି । ଗ୍ରାମାଞ୍ଚଳର ମଜୁରିଆ ଶ୍ରେଣୀର ଲୋକମାନଙ୍କୁ କାମଧନ୍ଦା ଯୋଗାଇ ଦେବା ପାଇଁ ଗତ ବର୍ଷ ୨୪ କୋଟି ଟଙ୍କାର ଉନ୍ନୟନମୂଳକ କାମ ହାତକୁ ନିଆଯାଇ ପ୍ରାୟ ୪୫ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇଥିବା ବେଳେ ଚଳିତ ବର୍ଷ ଏ ଯାବତ୍ ବିଭିନ୍ନ ସଂସ୍ଥା ଦ୍ୱାରା ୮ କୋଟି ଟଙ୍କା ବିନିଯୋଗରେ ୨୦ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇ ପାରିଛି ।

ଜିଲ୍ଲାରେ ଥିବା ଦୁଇଟି ବୃହତ୍ ଶିଳ୍ପ ସଂସ୍ଥା ଜେ: କେ: କାଗଜ କଳ ଓ ଥେରୁବାଲିସ୍ଥିତ ଫେରୋ ଆଲଏଜ୍ କାରଖାନା ଏ ଦୁଇ ବର୍ଷ ଭିତରେ ସେମାନଙ୍କର ଉତ୍ପାଦନ କ୍ଷମତା ବଢ଼ାଇବା ପାଇଁ ଅନେକ ପଦକ୍ଷେପ ନେଇଛନ୍ତି ଏବଂ ଫେରୋ ଆଲଏଜ୍ କାରଖାନା ଏ ଭିତରେ ଏକ ଉତ୍ତମ ଶିଳ୍ପ ସଂସ୍ଥା ଭାବେ ISO ୨୦୦2 ସାର୍ଟିଫିକେଟ୍ ପାଇବାର ଯୋଗ୍ୟତା ହାସଲ କରି ପାରିଛି । ଏହାଛଡ଼ା ଏହି ଜିଲ୍ଲାର କାଶୀପୁର ବ୍ଲକ୍ ଏବଂ କେ: ସିଂହପୁର ବ୍ଲକ୍‌ରେ ଯଥାକ୍ରମେ ଉତ୍କଲ୍ ଓ ଏଲ୍: ଏଣ୍ଡ୍ ଟି: ସଂସ୍ଥା ଦ୍ୱାରା ଦୁଇଟି ବୃହତ୍ ଆଲୁମିନା କାରଖାନା ଅତିଶୀଘ୍ର ସ୍ଥାପନ କରାଯିବା ପାଇଁ ଉଦ୍ୟମ ଚାଲିଛି । ଚଳିତ ବର୍ଷ ୫୦ ଲକ୍ଷ ଟଙ୍କା ମୂଳ ଧନରେ ଜ୍ୟୋତି ଷ୍ଟିଲ୍ କାଷ୍ଟିଂ ନାମକ ଏକ କ୍ଷୁଦ୍ର ଶିଳ୍ପ ସଂସ୍ଥା ଏ ଅଞ୍ଚଳର ଜଣେ ଶିଳ୍ପୋଦ୍ୟୋଗୀଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇଛି ।

ଜିଲ୍ଲାର ଗ୍ରାମାଞ୍ଚଳରେ ବିଭିନ୍ନ କ୍ରୀଡ଼ା ପ୍ରତିଯୋଗିତାମାନ କରାଯାଇ ନୂତନ ଖେଳାଳୀ ସୃଷ୍ଟି କରାଯାଉଛି । ପୁନଶ୍ଚ, ଜିଲ୍ଲାର ସଦର ମହକୁମାରେ ଅତିଶୀଘ୍ର ଏକ ଷ୍ଟାଡିୟମ୍ ନିର୍ମାଣ କରିବାର ଯୋଜନା ରହିଛି ଯାହାକି ଏଠାରେ ବିଭିନ୍ନ ରାଜ୍ୟସ୍ତରୀୟ କ୍ରୀଡ଼ା କାର୍ଯ୍ୟକ୍ରମମାନ ଅନୁଷ୍ଠିତ କରି ଜିଲ୍ଲାରେ କ୍ରୀଡ଼ାର ପ୍ରସାରରେ ସାହାଯ୍ୟ କରିବ । ଠିକ୍ ସେହିଭଳି ସାହିତ୍ୟ ସଂସ୍କୃତିର ପ୍ରସାର ପାଇଁ ଏ ଦିଗରେ ନିଷ୍ଠାର ସହ କାର୍ଯ୍ୟ କରୁଥିବା ଅନୁଷ୍ଠାନମାନଙ୍କୁ ସାହାଯ୍ୟ କରାଯାଇ ନୃତ୍ୟ, ସଙ୍ଗୀତ ତଥା ସାହିତ୍ୟର ଆକର୍ଷଣୀୟ ଆସରମାନ ଅନୁଷ୍ଠିତ ହୋଇପାରିଛି ।

ନୂଆ ଜିଲ୍ଲା । ଅନୁନ୍ନତ ଅଞ୍ଚଳ । ପ୍ରଶାସନିକ କାର୍ଯ୍ୟ ଦକ୍ଷତାର ସହ ସମ୍ପାଦନ କରିବା ଦିଗରେ ଅନେକ ଅସୁବିଧା । ଏ ସବୁ ସତ୍ତ୍ୱେ ଜନସାଧାରଣଙ୍କ ମଙ୍ଗଳ ପାଇଁ ଓ ଏ ଅଞ୍ଚଳର ବିକାଶ ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକ୍ରମଗୁଡ଼ିକୁ ଦକ୍ଷତାର ସହ କାର୍ଯ୍ୟକାରୀ କରିବା ପାଇଁ ସମସ୍ତ ସରକାରୀ କର୍ମଚାରୀ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଆନ୍ତରିକତାର ସହ କାର୍ଯ୍ୟ କରିବାକୁ ହେବ ।

ମନେ ରଖିବାକୁ ହେବ ଯେ, ଏ ସମସ୍ତ ବିକାଶମୂଳକ କାର୍ଯ୍ୟକ୍ରମ ମୂଳରେ ଜିଲ୍ଲାର ଅବହେଳିତ ଜନସାଧାରଣଙ୍କ ସୁଖ, ସମୃଦ୍ଧି ଓ ସ୍ୱାର୍ଥ ଜଡ଼ିତ ହୋଇ ରହିଛି ଓ ସେ ସବୁ ବାସ୍ତବ ଓ ସଫଳ ରୂପାୟନ ଉପରେ ହିଁ ଆମର ସ୍ଥିତି ନିର୍ଭର କରୁଛି । ଆଜିର ପବିତ୍ର ଦିବସରେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ନିମ୍ନୋକ୍ତ ବାଣୀ ମନେ ପଡ଼େ, ଯାହା ଆମର ସମସ୍ତ କାର୍ଯ୍ୟକୁ ପ୍ରଭାବିତ କରିବା ଉଚିତ ।

"I feel related to every other individual in this world and realise that I cannot be happy until the smallest of them is happy."

---

ଜିଲ୍ଲାପାଳ,
ରାୟଗଡ଼ା ଜିଲ୍ଲା ।

# ଏକ ଆଦିବାସୀ ଗାଁର ପରିବେଶ ସୁରକ୍ଷା

ଶ୍ରୀ ଅଲେଖ ପ୍ରଧାନ

ବାରପାହାଡ଼ର ଅଂଶ ବିଶେଷ ରାମଗଡ଼ ପାହାଡ଼ର ପାଦଦେଶରେ ଓ ବ୍ରାହ୍ମଣୀନାଳାର କୂଳେ କୂଳେ ଥିବା ଛୋଟ ଗାଁଟିଏ । ନାଁ ତା'ର ରାମଖୋଲ । ଗ୍ରାମର ପରିବାର ସଂଖ୍ୟା ୪୬ । ଲୋକସଂଖ୍ୟା ୨୫୭ । ସେମାନଙ୍କ ମଧ୍ୟରୁ ପୁରୁଷ ଲୋକଙ୍କ ସଂଖ୍ୟା ୧୨୦ ଓ ସ୍ତ୍ରୀ ଲୋକଙ୍କ ସଂଖ୍ୟା ୧୩୭ । ଏହା ବରଗଡ଼ ଜିଲ୍ଲାର ଅମ୍ବାଭୋନା ବ୍ଲକ୍ ଅନ୍ତର୍ଗତ ଉତ୍ତମ ଗ୍ରାମ ପଞ୍ଚାୟତର ଏକ ପଲ୍ଲୀ ଗାଁ । ରାମଖୋଲ ଗାଁକୁ ଯିବା ପାଇଁ ବରଗଡ଼ରୁ ଘୁଞ୍ଚୁରୀ ଯାଇଥିବା ପକ୍କା ସଡ଼କର ଉଦେଇପାଲି ଛକରୁ ଉତ୍ତମକୁ ୧ କିଲୋମିଟର ଓ ଉତ୍ତମରୁ ରାମଖୋଲକୁ ୧ କିଲୋମିଟର ଏହିପରି ୨ କିଲୋମିଟର କଚ୍ଚା ରାସ୍ତା ଅତିକ୍ରମ କରିବାକୁ ପଡ଼ିବ ।

ରାମଗଡ଼ ପର୍ବତ ଉପରେ ଏକ ଗଡ଼ର ଧ୍ୱଂସାବଶେଷ ରହିଛି । ଜନକରାମ ସାଏଦାର ନାମକ ଏକ ଗଣ୍ଡ ଜମିଦାର ଏଠାରେ ବାସ କରୁଥିବା କଥା ଲୋକ ମୁଖରୁ ଶୁଣାଯାଏ । ସମ୍ଭବତଃ ଏହି ଜମିଦାରଙ୍କ ନାମାନୁସାରେ ଗଡ଼ର ନାମ ରାମଗଡ଼ ଓ ତା' ପାଦଦେଶରେ ଥିବା ବସ୍ତିର ନାମ ରାମଖୋଲ ହୋଇଛି । ଗାଁର ଚତୁର୍ଦ୍ଦିଗରେ ଘଞ୍ଚଘଞ୍ଚିଆ ଜଙ୍ଗଲ । ଅଧିକାଂଶ ଜମି ଆଟ ଓ ମାଲଶ୍ରେଣୀର । ଅଳ୍ପ ଦିନରେ ଅମଳ ହେଉଥିବା ଧାନ, କୁଦୋ ଗୁନ୍‌ଜି, ଚିନାବାଦାମ ପ୍ରଭୃତି ଗାଁର ମୁଖ୍ୟ ଫସଲ । ସ୍ଥାନୀୟ ଅଧିବାସୀମାନଙ୍କ ମଧ୍ୟରୁ ଅଧିକାଂଶ ଆଦିବାସୀ ଓ ହରିଜନ ଶ୍ରେଣୀର । ଏମାନେ ଯଦିଓ କୃଷି ଉପରେ ନିର୍ଭର କରନ୍ତି ତଥାପି ବିଲବାଡ଼ିରୁ ଆମ୍ବ, ନିମ, ତେନ୍ତୁଳି ଓ ବଣ ଜଙ୍ଗଲରୁ ଚାର, ମହୁଲ କେନ୍ଦୁ, କୁର୍ଥି, ହରିଡ଼ା, ବାହାଡ଼ା, ଅଁଳା, ବେଲ, ପିତାକନ୍ଦା, କୁମ୍ଭିଆକନ୍ଦା, ଭୁଇଁ କଖାରୁ ପ୍ରଭୃତି ଫଳମୂଳ ସଂଗ୍ରହ କରି ଚଳନ୍ତି । ସ୍ତ୍ରୀ ଲୋକମାନେ ବଣଜଙ୍ଗଲରୁ କାଠ ପତ୍ର, କାଠିପତ୍ର ସଂଗ୍ରହ କରି ଶାଳ ପତ୍ରରେ ଖଲିଦନା ବନାଇ ଓ ଝାଡୁଗୁଛି ପାଖ ଗାଁଗଣ୍ଡାରେ ବିକନ୍ତି । ପ୍ରତିବର୍ଷ ପ୍ରତି ପରିବାର ମହୁଲ ଫୁଲ ସଂଗ୍ରହ କରି ବେଶ୍ ଦି ପଇସା ରୋଜଗାର କରିଥାନ୍ତି । କେବେ ଦୈବାତ୍ ଜ୍ୱରରେ ପଡ଼ିଲେ ଦଶମୂଳ ପାଞ୍ଚଣ କି ଗୁଳୁଚି ସିଝା ପାଣି କି ଘିଅ, ମହୁ ଟିକିଏ ପିଇ ଦେଇ ଭଲହୋଇ ଯାଉଥିଲେ । ହରିଡ଼ାକୁ ମହୁ ନିଆଁରେ ପୋଡ଼ାଇ ଖାଇଦେଉଥିଲେ କାଶରୋଗ କୁଆଡ଼େ ପଳାଇ ଯାଉଥିଲା । ବଣର ଫଳମୂଳ ଖାଇ ଓ ଝରଣାର ନିର୍ମଳ ଜଳପାନ କରି ଏମାନେ ପୁରୁଷ ପୁରୁଷ ଧରି ମହା ସୁଖରେ କାଳକାଟୁ ଥିଲେ । ଏହା ଥିଲା ରାମଖୋଲ ଗ୍ରାମବାସୀଙ୍କ ସୁବର୍ଣ୍ଣ ଯୁଗ ।

ତା'ପରେ ଆସିଲା ଭସ୍ମାସୁରର ଯୁଗ । ଏପଟରୁ ଟ୍ରକ୍, ମୋଟର ଯୋଗେ ଓ ସେପଟରୁ ମହାନଦୀର ହୀରାକୁଦ ଜଳଭଣ୍ଡାର ଦେଇ ବଡ଼ବଡ଼ ଡଙ୍ଗାରେ ଆସି ଖେରା ବେପାରିର ଦଳ ରାମଗଡ଼ ପାହାଡ଼ର ଗଛ, ବାଉଁଶ, କାଠ ସବୁ ଖେରି କରି ନେଇଗଲେ । ସାମୟିକ କିଛି ଲାଭ ପାଇବା ଆଶାରେ ଲୁଣ୍ଠନକାରୀମାନେ ଦସ୍ୟୁ ରତ୍ନାକର ସାଜି ଜଙ୍ଗଲରାଣୀର ସବୁ ଲୁଟ୍‌ପାଟ୍ କରି ନେଇଗଲେ । ଅଧିକ କେନ୍ଦୁପତ୍ର ଲୋଭରେ କେହି କେହି ନିଆଁ ଲଗାଇ ଦେଇ ଲଙ୍କାକାଣ୍ଡ ଘଟାଇ ଦେଲେ । ବନଦେବୀଙ୍କୁ ସେମାନେ ସମ୍ପୂର୍ଣ୍ଣ ଉଲଗ୍ନ କରି ଛାଡ଼ିଦେଲେ । ତା'ର ଏପରି ଦୟନୀୟ ଅବସ୍ଥା ଦେଖି ତାକୁ ଆଶ୍ରା କରି ରହି ଆସିଥିବା ବନ୍ୟ ଜୀବଜନ୍ତୁ ପଶୁପକ୍ଷୀମାନେ ଆତ୍ମଗୋପନ କରି ନପାରି ପ୍ରାଣ ଭୟରେ ପଳାୟନ କଲେ । ନିର୍ଦ୍ଦୟ ମାନବ ଦାନବ ସାଜି ସେମାନଙ୍କୁ ଗୋଡ଼ାଇ ଗୋଡ଼ାଇ ଶିକାର କଲା । ବନଦେବୀର ଆକୁଳ କ୍ରନ୍ଦନ ଶୁଣି ପ୍ରକୃତି କୋପକଲା । ବର୍ଷାରାଣୀ ଆଉ ଆଗଭଳି ବିଜୁଳି ମୁହଁରେ ହସିହସି ଆସିଲା ନାହିଁକି ଧରଣୀ ରାଣୀ ବି ଯେତେ ଖୋଳିଲେ ବି ଆଗଭଳି ଆଉ ପାଣି ଦେଲା ନାହିଁ । ସୂର୍ଯ୍ୟ ଦେବତା କଠୋର ଦୃଷ୍ଟିରେ ଚାହିଁଲେ । ଭୂମିକମ୍ପ ହେଲା, ବନ୍ୟା, ବାତ୍ୟା, ମହାମାରୀ ଉପସ୍ଥିତ ହେଲା ଏସବୁ ବିଲକ୍ଷଣ ଦେଖି ବିଶେଷ ଜ୍ଞାନୀ ବ୍ୟକ୍ତିମାନେ ଏହାର କାରଣ ଅନୁସନ୍ଧାନରେ ଲାଗିପଡ଼ିଲେ ।

ତା'ପରେ ଆସିଲା ପରିବେଶ ସଚେତନତାର ଯୁଗ । ବିଶେଷତଃ ଜ୍ଞାନୀ ଲୋକମାନେ ହଠାତ୍ ଦିନେ ଘୋଷଣା କଲେ ଯେ, ପୃଥିବୀରେ ବର୍ତ୍ତମାନ ଯେଉଁପରି ଅବିଚାରିତ ଭାବରେ ବଣ ଜଙ୍ଗଲ ଧ୍ୱଂସ କରାଯାଉଛି ତାହା ଯଦି ଅବ୍ୟାହତ ରହେ ତେବେ ଆଗାମୀ ୬୫ ବର୍ଷ ଭିତରେ ସମଗ୍ର ପୃଥିବୀରୁ ସମସ୍ତ ପ୍ରାଣୀଜଗତ ସମ୍ପୂର୍ଣ୍ଣରୂପେ ଲୋପ ପାଇଯିବ । ଉଦ୍ଭିଦଜଗତ୍ ବିନା ପ୍ରାଣୀଜଗତ୍‌ର କଳ୍ପନା କରି ପାଇ ନପାରେ । ଅମ୍ଳଜାନ୍ ହେଉଛି ଆମର ପ୍ରାଣବାୟୁ ବୃକ୍ଷ ଅମ୍ଳଜାନ୍ ଦିଏ । ଏଣୁ "ବୃକ୍ଷ ହିଁ ଜୀବନ" ।

ଦିନେ ରାମଖୋଲ ଗାଁର ଯୁବକମାନଙ୍କ ଆଗରେ ଏ କଥା ମୁଁ ପ୍ରକାଶ କରିଦେଲି । ଏହା ଜାଣିଲା ପରେ ସେମାନେ ଏକ ଯୁବକ

ସଂଘ ଗଢ଼ି ତାଙ୍କ ଗାଁକୁ ଲାଗି ରହିଥିବା ଗ୍ରାମ୍ୟ ଜଙ୍ଗଲକୁ ସୁରକ୍ଷା କରିବାକୁ ମନ କଲେ । ଗାଁରେ ଡାକରା ପକାଇ ଗ୍ରାମ୍ୟ ଜଙ୍ଗଲରୁ କାଠ ବାଉଁଶ କାଟିବା ଓ କରଡ଼ିକନ୍ଧ ଭାଙ୍ଗିବା ମନା କରିଦେଲେ । ରାମଖୋଲ ଗ୍ରାମର ଗ୍ରାମବାସୀଗଣ ପାଖ ଗ୍ରାମ୍ୟ ଜଙ୍ଗଲକୁ ଜଗାରଖା କରୁଥିବା କଥା ପ୍ରକାଶ ପାଇବାରୁ ସାମାଜିକ ବନ ପ୍ରକଳ୍ପର ଅଧିକାରୀଗଣ ସେମାନଙ୍କୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଗ୍ରାମ୍ୟ ଜଙ୍ଗଲରେ ଓ ପଡ଼ିଆ ଜମିରେ ବୃକ୍ଷ ରୋପଣ କରିଦେଲେ । ରାମଖୋଲ ଗାଁରେ ଗ୍ରାମ୍ୟ ବନ କମିଟି ଗଢ଼ି ଉଠିଲା । ସେମାନେ ପ୍ରତିଦିନ ଠେଙ୍ଗାପାଳି କରି ଦୁଇଜଣ ଲେଖାଏଁ ଯୁବକ ଗ୍ରାମ୍ୟ ଜଙ୍ଗଲକୁ ଯାଇ ଜଗି ବସିଲେ । ଗ୍ରାମ୍ୟ ଜଙ୍ଗଲର ଗଛଗୁଡ଼ିକର ଶାଖା ପ୍ରଶାଖାଗୁଡ଼ିକୁ କାଟି ପରିଷ୍କାର କରିଦେବାରୁ ଗଛଗୁଡ଼ିକ ସିଧା ସଳଖ ହୋଇ ଶୀଘ୍ର ଶୀଘ୍ର ବଢ଼ିଗଲା । ରାମଗଡ଼ ପାହାଡ଼ର ସୁରକ୍ଷା ଉପରେ ବି ସେମାନେ ଦୃଷ୍ଟି ଦେଲେ । ଚୋରା ବେପାରୀମାନେ ଏହା ଜାଣିପାରି ରାମଗଡ଼ ପାହାଡ଼ରୁ ଚୋରୀ କରିବାକୁ ଆଉ ସାହାସ କଲେନାହିଁ । ଫଳରେ ଗ୍ରାମ୍ୟ ଜଙ୍ଗଲଟି ଓ ରାମଗଡ଼ ପାହାଡ଼ ଅଳ୍ପ ଦିନରେ ଘଞ୍ଚ ଅରଣ୍ୟରେ ପରିଣତ ହୋଇଗଲା ।

ଆଦ୍ୟ ଆଷାଢ଼ର ପହିଲି ପରଶରେ କୁରେଫୁଲ ଓ କୁର୍ଦ୍ଦୁଫୁଲର ବାସ୍ନାରେ ବନଭୂମି ମହକି ଉଠିଲା । ଶ୍ରାବଣର ଘଡ଼ଘଡ଼ି ଶବ୍ଦରେ ବାଉଁଶ ବୁଦାମୂଳରେ ମୁଣ୍ଡଟେକି ସ୍ପର୍ଶିଲା । ବାଉଁଶ ସୁଆ କଡ଼ି ଛତା କଣ୍ଟେଇର ସାଗ୍ ଓ ନାନା ପ୍ରକାର ଜଙ୍ଗଲି ଛତୁରେ ଗ୍ରାମ୍ୟ ଜଙ୍ଗଲଟି ପୂରିଉଠିଲା । ଗ୍ରାମ୍ୟ ଜଙ୍ଗଲର ଘଞ୍ଚ ପତ୍ର ଗହଳିରୁ ଭାସି ଉଠିଲା କୋଇଲିର କୁହୁକୁହୁ ତାନ ଓ ମୟୁରର ନାଚଗୀତ, କପୋତ ଓ ବଣକୁକୁଡ଼ାର ଡାକରେ ବନଭୂମି ପୂର୍ବ ପରି ମୁଖରିତ ହେଲା । ଝାଉକୁନ୍ଦୁରୁ, କଙ୍କୋଡ଼ୋ, ଠେଲ୍‌କୋ ଓ ଅଷାଢ଼ିଆ ଫଳ ତୋଳିବାକୁ ପୂର୍ବପରି ଦଳଦଳ ହୋଇ ବାହାରି ପଡ଼ିଲେ ରାମଖୋଲ ଗାଁର ଝିଅ ବୋହୂମାନେ । ସେମାନେ ଗୁଛା ଗୁଛା କୁରେଫୁଲ ମୁଣ୍ଡରେ ଖୋସି ସ୍ୱରକୁ ସ୍ୱର ମିଳାଇ ଗାଉଉଠିଲେ ।

ରସର କେଳିରେ
ପାଞ୍ଚ ବରଷେଁ ଜଙ୍ଗଲ ବଢ଼ିଗଲା କେତେ
ଗଛପତରା ଡରାଡରା ହେଲା ଯେତେତେତେ
ଜୀବଜନ୍ତୁ ଶରା, ବରହା, ହନମାନ୍, ମାଙ୍କଡ଼
ଚରେଇ ଚିରଗୁନ୍ ବସାକଲେ ସଂସାର ଯାକର
କୁଇଲି ସୁର, ବଡ଼ ମଧୁର ବଉଳ, ବୁଲିଯିମା ସ୍ତୂଳ
ସାଙ୍ଗ କୁରେଫୁଲରେ
ଝାଉ କୁନ୍ଦୁରୁ–ଝାଉ କଙ୍କୋଡ଼ୋ ବଉଳ
ଯାହାକେ ଯେତେ ଫୁଲ, ସାଙ୍ଗ କୁରେଫୁଲରେ

ଏଠାରେ ସୂଚନାଯୋଗ୍ୟ ଯେ, ଗତବର୍ଷ ୦୫-୬-୧୯୯୩ ବିଶ୍ୱ ପରିବେଶ ଦିବସ ପାଳନ ଅବସରରେ ରାମଗଡ଼ ଯୁବକ ସଂଘକୁ ରାଜ୍ୟ ସରକାର ପ୍ରକୃତିମିତ୍ର ପୁରସ୍କାର ପ୍ରଦାନ କରିଛନ୍ତି ।

---

ଉଷମ, ବରଗଡ଼-୭୬୮୦୩୭

# ଚାଷୀର କଦଳୀ ଚାଷ : ଏକ ଦୁଃଖ ପାଶୋରା ଚାଷ

**ପ୍ରଫୁଲ୍ଲ କୁମାର ମିଶ୍ର**

କଦଳୀ ଏକ ଲାଭଜନକ ଫସଲ । ଏହା ଚାଷୀଙ୍କର ଏକ ଦୁଃଖ ପାଶୋରା ଓ ଐଶ୍ୱର୍ଯ୍ୟଦାତା କଦଳୀ ଚାଷ । ବର୍ତ୍ତମାନ ଚାଷୀମାନଙ୍କ ସମୟ ଆସିଛି । କଦଳୀ ଚାଷ ପଟୁ, ଦୋରସା ଓ ନିଗିଡ଼ା ମାଟିରେ ହୁଏ । ଯେଉଁ ମାଟିରେ ଜୈବିକ ସାର ବେଶୀ ଥାଏ, ସେଠାରେ କଦଳୀ ଚାଷ ବିଶେଷ ଭାବରେ ଲାଭଜନକ ହୋଇଥାଏ । ·ଜୁନ୍-ଜୁଲାଇ, ସେପ୍ଟେମ୍ବର-ଅକ୍ଟୋବର ଓ ଜାନୁୟାରୀ-ଫେବୃୟାରୀ ମାସରେ କଦଳୀ ଲଗାଇବା ପାଇଁ ପ୍ରକୃଷ୍ଟ ସମୟ । ବର୍ତ୍ତମାନ ସରକାରୀ ସ୍ତରରେ ଟିସୁ କଲଚର କଦଳୀ ଲଗାଇବା ପାଇଁ ସରକାରୀ ସ୍ତରରେ ଯୋଜନା କରାଯାଇ ଉଦ୍ୟାନ ବିଭାଗ ଜରିଆରେ କାର୍ଯ୍ୟଆରମ୍ଭ ହୋଇଛି । ଏହି କାର୍ଯ୍ୟ ବର୍ତ୍ତମାନ ଉଦ୍ୟାନ ନିର୍ଦ୍ଦେଶକଙ୍କ ଉଦ୍ୟମ ଅତି ଗୁରୁତ୍ୱପୂର୍ଣ୍ଣ କାରଣ ରାଜ୍ୟରେ କଦଳୀର ଅଭାବକୁ ପୂରଣ କରିବାରେ ସମ୍ପୂର୍ଣ୍ଣ ସାହାଯ୍ୟ କରିବ । କିନ୍ତୁ ସରକାର ଏହି ଟିସୁ କଲଚରରେ କଦଳୀ ଚାଷ କରିବା ପାଇଁ ଯେଉଁ ପୁଆ ଗୋଟି ୫ ଟଙ୍କା ରଖିଛନ୍ତି, ଏହି ଟଙ୍କାରୁ ସରକାର ଦୁଇ ଟଙ୍କା ଦେବେ ଚାଷୀ ୩ ଟଙ୍କା ଦେବ, ଏଥିରେ ଜଣେ ଗରିବ ଚାଷୀ ହିସାବଦେବ ଏଥିରେ ସନ୍ଦେହ ନାହିଁ । କାରଣ ଦେଶୀ କଦଳୀ ପୁଆ ସରକାର ୩୦ ପଇସାରେ ଦେଉଥିଲେ । କିନ୍ତୁ ବାମନ କଦଳୀ ୩ ଟଙ୍କା ପଡ଼ିବାରୁ ଏକରରେ ୧୨ ଶହ ପୁଆ ଲାଗୁଥିବାରୁ ଚାଷୀ ୩୬ ହଜାର ଟଙ୍କା ଏକ କାଳୀନ ଦେବାକୁପଡୁଛି । କିନ୍ତୁ ଦେଶୀ କଦଳୀ ୮ ଶହ ଏକରରେ ଲାଗୁଛି । ତେଣୁ ସରକାର ଉତ୍ସାହୀ କଦଳୀ ଚାଷୀଙ୍କ ପାଇଁ ଟିସୁକଲଚରରେ ପୁଆ ପ୍ରତି ୧ ଟଙ୍କା ରଖି ସବ୍‌ସିଡ଼ି ଆକାରେ ଦୁଇ ଟଙ୍କା ଦେବା ପାଇଁ ଚାଷୀମାନେ ଦାବୀ କରିଛନ୍ତି । ଏଣୁ ସରକାର ତଥା ରାଜ୍ୟ ଉଦ୍ୟାନ ବିଭାଗ ନିର୍ଦ୍ଦେଶକ ଏ ବିଷୟରେ ସରକାରଙ୍କୁ ଏକ ପ୍ରସ୍ତାବ ଦେଇ ଯଥା ଶିଘ୍ର ପଦକ୍ଷେପ ନେଇ ଚାଷୀଙ୍କୁ ଉତ୍ସାହିତ କରିବା ଦିଗରେ କାର୍ଯ୍ୟ ପନ୍ଥା ଗ୍ରହଣ କରିବେ ବୋଲି ଆଶା କରାଯାଉଛି । କଦଳୀ ଚାଷ ଏକ ଲାଭ ଜନକ ଚାଷ ନିଶ୍ଚୟ । କଦଳୀ ଏକ ପ୍ରକାର ଫସଲ ଯେଉଁଥିରେ କି ଆମେ ସୁଷମ ଖାଦ୍ୟ ପାଇ ପାରିବା । ଏକାଧାରାରେ ଏହା ଏକ ଅର୍ଥକାରୀ ସୁସ୍ୱାଦୁ ଫସଲ ଅଟେ । ଓଡ଼ିଶାର ଜଳ ବାୟୁ କଦଳୀ ଚାଷ ପାଇଁ ଅନୁକୂଳ ପଟୁ, ଦୋରସା ଓ ନିଗିଡ଼ା ମାଟି କଦଳୀ ଚାଷ ପାଇଁ ଉପଯୁକ୍ତ । ସମୁଦ୍ର କୂଳିଆ ଅଞ୍ଚଳରେ ବାତ୍ୟା ଅଧିକ ସମୟରେ ହେଉଥିବାରୁ ବାମନ ଜାତୀୟ କଦଳୀ ସେ ସବୁଅଞ୍ଚଳରେ ଲଗାଇବା ଉଚିତ । ବାମନ ଜାତୀୟ କଦଳୀ ୬ ଫୁଟରେ ୬ ଫୁଟ ବ୍ୟବଧାନ ଓ ଦେଶୀ ଜାତୀୟ କଦଳୀ ୮ ଫୁଟରେ ୮ ଫୁଟ ବ୍ୟବଧାନରେ ଲଗାଯାଏ । ପ୍ରଥମ ବର୍ଷ ଏକ ଏକର ବାମନ ଜାତୀୟ କଦଳୀରୁ ୧,୦୦୦ କାନ୍ଧି ପଡ଼ିଲେ ହାରା ହାରି କାନ୍ଧି ପିଛା ୨୫ ଟଙ୍କା ହିସାବରେ ମୋଟ ୨୫ ହଜାର ଟଙ୍କା ମିଳିବ । ଚାଷ ଖର୍ଚ୍ଚ ଆଠ ହଜାର ଯାଇ ମୋଟ ୧୭ ହଜାର ଟଙ୍କା ଲାଭ ମିଳିବ । ସେହିପରି ଚମ୍ପା ପାଟଳପୁରା ପ୍ରଥମ ବର୍ଷ ୫୦୦ କାନ୍ଧି ପଡ଼ିଲେ ହାରା ହାରି କାନ୍ଧି ପିଛା ୩୦ ଟଙ୍କା ହେଲେ ମୋଟ ୧୮ ହଜାର ଟଙ୍କା ମିଳିବ । ଖର୍ଚ୍ଚ ବାବଦ ୬,୦୦୦ ଟଙ୍କା ଗଲେ ୧୨ ହଜାର ଟଙ୍କା ମିଳିବ । ବାଲିଗୁଡ଼ା ସବ୍‌ଡିଭିଜନରେ ୧୯୯୦-୯୧ର ସମୀକ୍ଷାରୁ ଜଣାଯାଏ ଯେ ୮୦ ଏକର ଚାଷୀଙ୍କ ଜମିରେ କଦଳୀ ଚାଷ କରାଯାଇଛି । ୧୯୯୧-୯୨ରେ ୧୦୦ ଜଣ ଚାଷୀଙ୍କ ଜମିରେ ୨୫ ଏକର ଜମିରେ କଦଳୀ ଚାଷ କରାଯାଇଛି । ବାଲିଗୁଡ଼ାରେ ଟିସୁକଲଚର ଯୋଜନା କରାଯିବାକୁ ଆରମ୍ଭ କରାଯାଇଛି । ଏହି ସବ୍ ଡିଭିଜନରେ କଦଳୀ ଚାଷ କରିବା ପାଇଁ ଆଇ.ଟି.ଡି.ଏ.ର କର୍ମକର୍ତ୍ତା ମଧ୍ୟ ଗୁରୁତ୍ୱ ଦେଇଛନ୍ତି । ଖୋରଧା ସବ୍‌ଡିଭିଜନରେ ୧୯୯୧ ବର୍ଷରେ ୧୫୦ ହେକ୍ଟର ହୋଇଥିଲା । ସମୀକ୍ଷାରୁ ଜଣାଯାଏ ଗଞ୍ଜାମ ଜିଲ୍ଲାର ଜଣେ ଶିକ୍ଷିତ ଯୁବକ ଶ୍ରୀ ସୀମାଞ୍ଚଳ ମହାନ୍ତି ହଠାତ୍ ଦିନେ ଘୋଡ଼ାହାଡ଼ ବନ୍ଧ ଉପରେ ବୁଲୁବୁଲୁ ଆଖି ପଡ଼ିଲା ତା'ର ଏକ ଫାର୍ମ ଉପରେ ସେହିଠାରୁ ସେ କଦଳୀ ଚାଷ କରିବା ପାଇଁ ମନ ବଳେଇ ଉଦ୍ୟାନ କର୍ମଚାରୀଙ୍କ ସହ ପରାମର୍ଶ କଲା ୮୦ ଡିସିମିଲ ଜମିରେ ଗୋଟିଏ କୂଅ ଥିଲା ସେହି ଜମିରେ କଦଳୀ ଚାଷ ଆରମ୍ଭ କରି ୮୫୦ ପୁଆ ଲଗାଇଲା ·ସେହି କଦଳୀ ଗଛରେ ୮୦୦ କାନ୍ଧି ଆସିବାର ଦେଖି ତା'ର ଚାକିରି କଥା ଭୁଲିଗଲା ଏବଂ ତା'ର ସେହି କଦଳୀ କାନ୍ଧି ଦେଖି ମନ ପୁରି ଉଠିଲା ଏବଂ ଦୁଃଖ ପାଶୋରି ଦେଲା ଆନୁମାନିକ ପୁଆ ଓ କଦଳୀ କାନ୍ଧି ବିକ୍ରି କରି ୨୫ ହଜାର ଟଙ୍କା ପାଇଥିଲେ । ବାଲିଗୁଡ଼ା ଉପଖଣ୍ଡରେ ବର୍ତ୍ତମାନ କଦଳୀ ଚାଷ କରିବାକୁ ବହୁ ଚାଷୀ ଆଗ୍ରହ ପ୍ରକାଶ କଲେଣି । ଏହି ଉପଖଣ୍ଡର କଦଳୀ ବର୍ତ୍ତମାନ ବ୍ରହ୍ମପୁର, ରାୟଗଡ଼ା, ଭଞ୍ଜନଗର, ମୁନିଗୁଡ଼ା ବଜାରରେ ଦେଖିବାକୁ ମିଳୁଛି । ଏହି ଗ୍ରାମରେ କଦଳୀ ଦର ଯିବା ଦ୍ୱାରା କେତେକାଂଶରେ ସେହି ସମୟରେ କଦଳୀ ଚାଷ କମିଯାଉଛି । ଉକ୍ତ ଗ୍ରାମରେ ୭୫ ଭାଗ ଲୋକ କଦଳୀ ଚାଷ କରୁଛନ୍ତି । ୧୯୯୧ ମସିହା ସମୀକ୍ଷାରୁ ଜଣାଯାଏ ଯେ ବାଲିଗୁଡ଼ା ବଜାରକୁ ୧୨ ଶହ କଦଳୀ କାନ୍ଧୀ ବିକ୍ରି କରିବା ପାଇଁ ଆସିଥିଲା । ଏହି ଆର୍ଥିକ ବର୍ଷରେ କଦଳୀ ଚାଷୀ ବାର୍ଷିକ ୩୦ ହଜାର ଟଙ୍କାର କଦଳୀ ବିକ୍ରୟ କରନ୍ତି । ବର୍ତ୍ତମାନ ଟ୍ରକ୍ ଟ୍ରକ୍ କଦଳୀ ଏହି ଏରିଆକୁ ଯାଉଛି । ବାଲିଗୁଡ଼ା ପଣସପଡି ଗ୍ରାମରେ ସୀମାଞ୍ଚଳ

ମାଝି କଦଳୀ ଚାଷ କରି ବାର୍ଷିକ ୫୦ ହଜାର ଟଙ୍କା ପାଉଛନ୍ତି । ଚଳିତ ବର୍ଷ ଉପଖଣ୍ଡରେ ଉଦ୍ୟାନ ବିଭାଗ ତରଫରୁ ୨୦ ହଜାର ଭୁଷାବଳ, ୧୦ ହଜାର ପାଟକପୁରା ପୁଆ ଚାଷୀ ମାନଙ୍କୁ ଯୋଗାଇ ଦିଆଯାଇଛି । ତେଣୁ ରାଜ୍ୟ ସରକାର ପୁରୀ, ଖୋର୍ଦ୍ଧା, ଗଞ୍ଜାମ, କଟକ, ବଲାଙ୍ଗୀର, ସମ୍ବଲପୁର, ସୁନ୍ଦରଗଡ଼, ମୟୂରଭଞ୍ଜ, ବୌଦ୍ଧ, ବାଲେଶ୍ୱର, ଢେଙ୍କାନାଳ ଅନୁଗୁଳ ଜିଲ୍ଲାଗୁଡ଼ିକରେ ବ୍ୟାପକ ଭାବରେ କଦଳୀ ଚାଷର ପ୍ରସାର କରାଯିବା ଦିଗରେ କାର୍ଯ୍ୟପନ୍ଥା ଉଦ୍ୟାନ ବିଭାଗ ତରଫରୁ ଅଗ୍ରାଧୀକାର ଦିଆଯାଉ । ବର୍ତ୍ତମାନ ଯାହା ଓଡିଶାରେ କଦଳୀଚାଷ ହୋଇଛି । ତାହା ଅନ୍ୟ ରାଜ୍ୟ ତୁଳନାରେ କମ୍ । ତେଣୁ ଓଡ଼ିଶା ଆନ୍ଧ୍ର ପ୍ରଦେଶ ଉପରେ କଦଳୀ ପାଇଁ ନିର୍ଭର କରୁଛି । ଏହା ସଙ୍ଗେ ସରକାର ଚାଷୀଙ୍କୁ ଉତ୍ସାହିତ କରିବା କଦଳୀ ପାଇଁ ନିର୍ଭର କରୁଛି । ଏହା ସଙ୍ଗେ ସରକାର ଚାଷୀଙ୍କୁ ଉତ୍ସାହିତ କରିବା ସୁବିଧା କରିବା ସହ ଚାଷୀମାନେ କଦଳୀ ଚାଷ କରି ଯେପରି ଅଧିକ ଅର୍ଥ ଉପାର୍ଜନ କରିବେ ଏବଂ ଆନ୍ଧ୍ର ପ୍ରଦେଶ କଦଳୀ ଚାଷୀଙ୍କଠାରୁ ଆଗୁଆ ହୋଇ ନିଜର କଦଳୀ ଚାଷରୁ ଓଡିଶା ବଜାର ଚାହିଦା ମେଣ୍ଟାଇବା ସଙ୍ଗେ ଅନ୍ୟ ରାଜ୍ୟକୁ ଯେପରି ରପ୍ତାନି କରିବେ ସେ ଦିଗରେ ଯୋଜନା ବଦ୍ଧ ଭାବରେ ଚାଷ କରନ୍ତୁ । ତେଣୁ କଦଳୀ ଚାଷ ଉପରେ କିଛି ସୂଚନା ଦେଉଛି । କଦଳୀ ଚାଷ ଜୁନ୍–ଜୁଲାଇ, ସେପ୍ଟେମ୍ବର - ଅକ୍ଟୋବର, ଜାନୁୟାରୀ–ଫେବୃୟାରୀ କଦଳୀ ଲଗାଇବା ସମୟ । କଦଳୀ ପୁଆ ଗୁଡିକ ଲଗାଇବା ପୂର୍ବରୁ ବିଶୋଧନ ପାଇଁ ରାସାୟନିକ ଔଷଧ ମଧ୍ୟରୁ ଏକ ଲିଟର ପାଣିରେ ଏକ ଗ୍ରାମ ସେରେସନ୍ ସେଟିତ ଗୁଣ୍ଡ କିମ୍ବା ଦୁଇ ଗ୍ରାମ ଡିଥେନ ଏମ୍–୪୫ ଗୁଣ୍ଡ ମିଶାଇ ପୁଆର ମୂଳଭାଗକୁ ୧୦ ମିନିଟ୍ ବୁଡ଼ାଇ ରଖିବା ପରେ ପୁଆକୁ ଭୂମିଠାରୁ ୨୦ ସେମି ତଳେ ପୋତାଯାଏ । ସାର ପ୍ରୟୋଗରେ ଗଛ ପ୍ରତି ମୂଳ ସାର ଭାବେ ୨୫୦ ଗ୍ରାମ ଜୈବିକ ସାର ଓ ୨୫୦ ଗ୍ରାମ ସୁପର ସାର ପ୍ରୟୋଗ କରିବେ । ଗଛ ଲଗାଇବାର ୬୦ ଦିନ ପରେ ୧୦୦ ଗ୍ରାମ ସିଃଏଃଏନ୍ଃ ବା ୫୦ ଗ୍ରାମ ୟୁରିଆ ଓ ୧୦୦ ଗ୍ରାମ ପଟାସ ସାର ଦେବେ । ଦ୍ୱିତୀୟ କିଛି ସାର ୯୦ ଦିନ ବେଳକୁ ୧୫୦ ଗ୍ରାମ ସିଃଏଃଏନ୍ଃ ବା ୭୫ ଗ୍ରାମ ୟୁରିଆ ଓ ୧୦୦ ପଟାସ ସାର ପ୍ରୟୋଗ କରିବେ । ଶେଷରେ ୧୨୦ ଦିନରେ ୧୫୦ ଗ୍ରାମ ସିଃଏଃଏନ୍ଃ ଓ ୧୦୦ ଗ୍ରାମ ପଟାସ ସାରରେ ପ୍ରୟୋଗ୍ କରିବେ । ଜଳ ସେଚନରେ ଶୀତ ଦିନେ ମାସରେ ଥରେ ବା ଦୁଇଥର ଏବଂ ଖରାଦିନେ ଚାରି ଥର ବା ପାଞ୍ଚ ଥର ପାଣି ଦେବାର ଆବଶ୍ୟକ । ରୋଗ, ପୋକ ତା'ର ପ୍ରତିକାର ବିଷୟରେ ନିକଟରେ ଥିବା ଉଦ୍ୟାନଙ୍କ କର୍ମଚାରୀ ଉଦ୍ୟାନ ଭିତ୍ଙ୍କ ସହ ପରାମର୍ଶ କରିବା ଦରକାର । କଦଳୀର ପ୍ରକାର ଢେଙ୍ଗା ଓ ବାମନ କଦଳୀ ଚମ୍ପା ପାଟକପୁରା, ବନ୍ଥଳ ଢେଙ୍ଗାକଦଳୀ ରୋବଷ୍ଟା ବା କାବୁଲି କଦଳୀକୁ ବାମନ କଦଳୀକୁହାଯାଏ । ଆମ ରାଜ୍ୟରେ ଚାଷୀ ପାହାଡ଼ିଆ ଅଞ୍ଚଳରେ ମୁଗୁନି ବୁଢୁପଟା ପୋଡ଼ସିଂଶା ଶିଥିମାଲାଇ ବିରୂପାକ୍ଷ ଇତ୍ୟାଦି କିସମର କଦଳୀ ନିପାଣିଆ ଭାବେ ଚାଷ କରାଯାଏ । ମୁଗୁନି ଓ ବୁଢୁଫଟା କଦଳୀ ପାଚିଲା କଦଳୀ ହିସାବରେ ଖାଇବାକୁ ଭଲ ଲାଗେ ।। ଲାଲ ରଙ୍ଗର କଦଳୀ ବିଟ୍ ବାରା ପାହାଡ଼ିଆ ଅଞ୍ଚଳର ନିଜସ୍ୱକିସମ ଏହାମଧ୍ୟ ପାଚିଲା କଦଳୀ ଭାବରେ ଗ୍ରହଣ କରାଯାଏ । କଦଳୀ ଚାଷ ଏକ କାଳୀନ ୫ ଏକର କେଲ୍ ବ୍ୟାଙ୍କ୍ ତରଫରୁ ମଧ୍ୟ ଋଣ ମିଳୁଛି ଯଦି ଚାଷ ଏକ କଳୀନ ୫ ଏକର କଲବ୍ୟାଙ୍କ୍ ତରଫରୁ ମଧ୍ୟ ଋଣ ମିଳିଛି । ଯଦି ଚାଷୀ ଆଗ୍ରହ ପ୍ରକାଶ କରେ ତାହା ହେଲେ ନିଜ ସବ୍ ଡିଭିଜନରେ ଥିବା ଉଦ୍ୟାନ୍ ବିତ୍ଙ୍କସହ ଏ ବିଷୟ ପରାମର୍ଶ କଲେ ସମସ୍ତ ଚାଷ ଓ ରୋଗ ପୋକ ଦାଉରୁ ରକ୍ଷା ଏବଂ ଏବିଷୟ ପରାମର୍ଶ କଲେ ସମସ୍ତ ଚାଷ ଓ ରୋଗ ପୋକ ଦାଉରୁ ରକ୍ଷା ଏବଂ ସରକାରୀ ସାହାଯ୍ୟ ବିଷୟ ବୁଝି ପାରିବେ । ତେଣୁ ଚାଷୀ ଭାଇମାନେ କଦଳୀ ଚାଷ ଆରମ୍ଭ କରିବାର ସମୟ ଆସିଛି । ଆସନ୍ତୁ ବୁଝି ବିଚାରି ଚାଷ ଆରମ୍ଭ କରିଦିଅନ୍ତୁ ।

---

ସାମ୍ବାଦିକ,
କୁହୁଡ଼ି-୩

# ପ୍ରଗତି ପଥେ ପଞ୍ଚାୟତିରାଜ

**ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି**

୧୯୯୨ ମସିହା ଡିସେମ୍ବର ୨୨ ତାରିଖରେ ସଂସଦ ଦ୍ୱାରା ଗୃହୀତ ୭୨ତମ ସମ୍ବିଧାନ ସଂଶୋଧନ ବିଲ୍ ଯାହା ପରେ ୭୩ତମ ସଂଶୋଧନ ବିଲ୍ ବୋଲି ପୁନଃନାମିତ ହେଲା। ଦେଶର ସାମ୍ବିଧାନିକ ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା(୧)। ୧୯୯୩ ମସିହା ଅପ୍ରେଲ୍ ୨୪ ତାରିଖରୁ ଏହି ପଞ୍ଚାୟତରାଜ ବିଲ୍ ଆଇନ ଭାବେ କାର୍ଯ୍ୟକାରୀ ହେଲା। ବିକାଶ କାର୍ଯ୍ୟକ୍ରମକୁ ସଫଳ ରୂପାୟନ ଦେବା ପାଇଁ ଏବଂ ନିମ୍ନସ୍ତରରେ ବିକେନ୍ଦ୍ରୀକରଣ ବ୍ୟବସ୍ଥାକୁ ପ୍ରବର୍ତ୍ତନ କରିବା ପାଇଁ ଏହି ବିଲ୍‌କୁ ପ୍ରଧାନ ଅସ୍ତ୍ର ରୂପେ ବ୍ୟବହାର କରାଗଲା। ଭାରତୀୟ ସମ୍ବିଧାନର ଧାରା ୪୦ ଅନ୍ତର୍ଗତ ରାଜ୍ୟର ନୀତି ନିର୍ଦ୍ଦେଶକ ତତ୍ତ୍ୱରେ ଯେଉଁ ବ୍ୟବସ୍ଥା ଅଛି ଯେ, "ରାଜ୍ୟ ଗ୍ରାମପଞ୍ଚାୟତମାନ ଗଠନ କରି ସେମାନେ ଯେପରି ସ୍ୱୟଂ ଶାସନର ଏକକ ରୂପେ କାର୍ଯ୍ୟ କରିପାରିବେ ସେଥିପାଇଁ ସେମାନଙ୍କୁ କ୍ଷମତା ଓ କର୍ତ୍ତୃତ୍ୱ ଦେବା ଦିଗରେ ପଦକ୍ଷେପ ଗ୍ରହଣ କରିବ। ତାହାକୁ ନୀତିଗତ ଭାବେ ରୂପରେଖ ଦେବା ୭୨ତମ ସମ୍ବିଧାନ ସଂଶୋଧନ ଆଇନର ମୂଳ ଉଦ୍ଦେଶ୍ୟ(୨)। ଏହି ଆଇନରେ ପଞ୍ଚାୟତମାନଙ୍କୁ ସଂଗଠିତ କରିବା ଏବଂ ସେମାନଙ୍କୁ ଆବଶ୍ୟକୀୟ କ୍ଷମତା ପ୍ରଦାନ କରିବାର ଦାୟିତ୍ୱ ରାଜ୍ୟ ସରକାରଙ୍କ ଉପରେ ନ୍ୟସ୍ତ କରାଯାଇଛି। ଆମ ଦେଶରେ ସଂଘୀୟ ଶାସନ ବ୍ୟବସ୍ଥା ପ୍ରଚଳନ ହେଉଥିବାରୁ ସ୍ୱାୟତ୍ତ ଶାସନ ସଂକ୍ରାନ୍ତ ବିଷୟ ରାଜ୍ୟ ତାଲିକାର ଅନ୍ତର୍ଭୁକ୍ତ। ତେଣୁ ପଞ୍ଚାୟତରାଜ ସଂଗଠନ ଏବଂ କ୍ଷମତା ପ୍ରଦାନ ସମ୍ପର୍କୀୟ ଆଇନ ପ୍ରଣୟନର ଭାର ପ୍ରତ୍ୟେକ ରାଜ୍ୟ ବିଧାନ ସଭା ଉପରେ ଛାଡ଼ି ଦିଆଯାଇଛି।

ପଞ୍ଚାୟତ ବ୍ୟବସ୍ଥା ଯେ ଏକ ଅଭିନବ ପରିକଳ୍ପନା ତାହା ନୁହେଁ, ପ୍ରାଚୀନ ଭାରତରେ ଗାଁ ଗଣ୍ଡାରେ ପଞ୍ଚାୟତ ବିଭିନ୍ନ ନାମରେ ତିଷ୍ଠି ରହିଥିଲା। ସେ ସମୟରେ ଗାଁ ଗଣ୍ଡାର ପରିଚାଳନା ଭାର ଗ୍ରାମପଞ୍ଚାୟତ ଉପରେ ନ୍ୟସ୍ତ ଥିଲା। ଏପରିକି ପଞ୍ଚାୟତଗୁଡ଼ିକ ଗ୍ରାମବାସୀମାନଙ୍କୁ ନ୍ୟାୟ ପ୍ରଦାନ କରୁଥିଲା। ଗ୍ରାମବାସୀମାନେ ମୁଖ୍ୟତଃ ଆତ୍ମ ନିର୍ଭରଶୀଳ ଥିବାରୁ ଅଧିକ ପରିମାଣରେ ସେମାନେ ସ୍ୱୟଂ ଶାସନ କ୍ଷମତା ଉପଭୋଗ କରୁଥିଲେ। ଦେଶବ୍ୟାପୀ ଗ୍ରାମପଞ୍ଚାୟତଗୁଡ଼ିକ ବିଦେଶୀ ଆକ୍ରମଣର ସଠିକ୍ ପ୍ରତିରୋଧ କରିବାରେ ଜନସାଧାରଣଙ୍କୁ ସହାୟତା ଯୋଗାଇ ଦେଉଥିଲା। ବିଦେଶୀ ଆକ୍ରମଣଜନିତ ରାଜନୈତିକ ପରିବର୍ତ୍ତନର ପ୍ରଭାବ ଜନସାଧାରଣଙ୍କ ଉପରେ ପଡୁନଥିଲା। କାରଣ ଆକ୍ରମଣ ପରବର୍ତ୍ତୀ ପରିସ୍ଥିତିକୁ ସେମାନେ ସମ୍ଭାଳି ନେଇ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ପୁନର୍ଗଠନ କରୁଥିଲେ।

ଇଂରେଜ ଶାସନ ସମୟରେ ଗ୍ରାମପଞ୍ଚାୟତ ବ୍ୟବସ୍ଥା ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା। ଦେୱାନୀ ଓ ଫୌଜଦାରୀ ଅଦାଲତ ପ୍ରତିଷ୍ଠା, ରାଜସ୍ୱ ତଥା ପୁଲିସ୍ ବ୍ୟବସ୍ଥାର ପ୍ରଚଳନ, ରେଳବାଇ ଓ ଯୋଗାଯୋଗର ସୁବିଧା ସୁଯୋଗ ଏବଂ ସର୍ବୋପରି ବ୍ୟକ୍ତି ସ୍ୱାତନ୍ତ୍ର୍ୟ ମନୋଭାବର ବିକାଶ ପଞ୍ଚାୟତଗୁଡ଼ିକୁ ନିଷ୍କ୍ରିୟ କରି ଦେଇଥିଲା। ଇଂରେଜମାନେ ମଧ୍ୟ ଆମ ଦେଶୀୟ ଅନୁଷ୍ଠାନଗୁଡ଼ିକୁ ପୁନରୁଜ୍ଜୀବିତ କରିବା ପାଇଁ ଚେଷ୍ଟା କରୁନଥିଲେ। ସେମାନେ ଭାରତକୁ କେବଳ ବ୍ରିଟିଶ୍ କଳକାରଖାନା ପାଇଁ କଞ୍ଚାମାଲ ଯୋଗାଣକାରୀ ରାଷ୍ଟ୍ର ରୂପେ ରଖିବାକୁ ଚାହୁଁଥିଲେ। ଗାଁ ଗହଳିର ଜନସାଧାରଣମାନଙ୍କୁ ନିଯୁକ୍ତି ଯୋଗାଉଥିବା କ୍ଷୁଦ୍ର କୁଟୀର ଶିଳ୍ପଗୁଡ଼ିକ ମଧ୍ୟ ବହୁ ପରିମାଣରେ ବିନାଶ ହୋଇ ଯାଇଥିଲା। କଳକାରଖାନା ଜାତ ସାମଗ୍ରୀମାନ କୁଟୀର ଶିଳ୍ପ ଜାତ ପଦାର୍ଥଠାରୁ ଶସ୍ତାରୁ ମିଳିବାରୁ ସେ ସବୁ ପଦାର୍ଥକୁ କିଣିବା ପାଇଁ ଲୋକଙ୍କର ଆଗ୍ରହ କ୍ରମଶଃ ବୃଦ୍ଧି ପାଇଥିଲା। କୃଷି ଜମି ଉପରେ କ୍ରମାଗତ ଚାପ ବଢ଼ିବା ସଙ୍ଗେ ସଙ୍ଗେ ନିଯୁକ୍ତିର ବିକଳ୍ପ ବ୍ୟବସ୍ଥା ହୋଇ ନପାରିବାରୁ ଜନସାଧାରଣଙ୍କ ମଧ୍ୟରେ ବେକାରୀ ସମସ୍ୟା ଦେଖା ଦେଇଥିଲା(୪)।

୧୮୮୨ ମସିହାରେ ଲର୍ଡ଼ ରିପନ୍ ଆଞ୍ଚଳିକ ସ୍ୱୟଂ ବିଭାଗ (Local Self Department) ପ୍ରତିଷ୍ଠା କଲେ। ୧୮୮୫ ମସିହାରେ ଜିଲ୍ଲା ଓ ତାଲୁକ ବୋର୍ଡ଼ମାନ ଖୋଲାଗଲା। ଏ ସବୁ ଅନୁଷ୍ଠାନର ସଭାପତି ଭାବେ ଜିଲ୍ଲା କଲେକ୍ଟର କିମ୍ବା ଡେପୁଟି କଲେକ୍ଟର କିମ୍ବା ରାଜସ୍ୱ ଅଫିସର ରହିଲେ। ଏଥିରେ ବେସରକାରୀ ନିର୍ବାଚିତ ସଦସ୍ୟ ରହିଥିଲେ ହେଁ ସେମାନଙ୍କର ସଂଖ୍ୟା ସରକାରୀ ମନୋନୀତ ସଦସ୍ୟଙ୍କଠାରୁ କମ୍ ଥିଲା। ଫଳରେ ଏ ସବୁ ଅନୁଷ୍ଠାନର ଅସଲ ଉଦ୍ଦେଶ୍ୟ ପୂରଣ ହୋଇ ପାରିଲା ନାହିଁ(୫)। ୧୯୦୭ ମସିହାରେ ଗଠିତ ରୟାଲ୍ କମିଶନ୍ (Royal Commission) କ୍ଷମତା ବିକେନ୍ଦ୍ରୀକରଣ ଉପରେ ମତ ଦେଇ ସୁପାରିଶ କରିଥିଲା ଯେ ଗାଁ ହେଉଛି ସରକାରୀ ପ୍ରଶାସନର ମୌଳିକ ଏକକ। ତେଣୁ ସ୍ୱୟଂ ଶାସନ କ୍ଷମତା ହରାଇଥିବା ଗ୍ରାମପଞ୍ଚାୟତଗୁଡ଼ିକୁ ପୁନରୁଜ୍ଜୀବିତ କରାଯାଉ। କିନ୍ତୁ ଇଂରେଜ ଶାସକମାନେ ଏହି ସୁପାରିଶର ଅସଲ ଶକ୍ତିକୁ କାଢ଼ିନେଇ ପଞ୍ଚାୟତଗୁଡ଼ିକୁ ଜିଲ୍ଲା ପ୍ରଶାସନ ଅଧୀନରେ ପରିଚାଳିତ କରିବା ପାଇଁ ପରାମର୍ଶ ଦେଲେ। ଏଗୁଡ଼ିକୁ ସମବାୟ ସମିତି ରେଜିଷ୍ଟ୍ରାରଙ୍କ ନିୟନ୍ତ୍ରଣରେ ରଖିବାକୁ ରାଜି ହେଲେ ନାହିଁ(୬)।

୧୯୧୫ ମସିହାରେ ଲରେନ୍ସ୍ କମିଟି (Lawrence Committee), ୧୯୧୯ର ମଣ୍ଟଫୋର୍ଡ଼ (Montford) ଓ ୧୯୩୫ର ଭାରତ ସରକାର ଆଇନ (Government of India Act) ସ୍ୱାୟତ୍ତ ଶାସନ କ୍ଷେତ୍ରରେ କେତେକ ପଦକ୍ଷେପ ନେଇଥିଲେ ହେଁ ତାହା ଆଶାନୁରୂପ ହୋଇ ପାରିନଥିଲା। ଇଂରେଜ ସରକାରଙ୍କ ଭୟ ଥିଲା ଯେ ସ୍ୱାୟତ୍ତ ଶାସନ ସଂସ୍ଥାଗୁଡ଼ିକୁ ଅଧିକ କ୍ଷମତା ଦିଆଗଲେ ସେମାନେ ଉଚ୍ଚ ସ୍ତରରେ ଆହୁରି ଅଧିକ କ୍ଷମତା ପାଇଁ ଦାବୀ କରିବେ। ମହାତ୍ମା ଗାନ୍ଧୀଙ୍କର ଯେଉଁ ଚିନ୍ତାଧାରା "Independence must begin at the bottom. Thus every village will be a republic or Panchayat having full powers. It follows, therefore, that every village has to be self sustained and capable of managing its affairs.....(Harijan, July 28, 1946) ସମ୍ଭବତଃ ଇଂରେଜ ସରକାରଙ୍କୁ ଭୟଭୀତ କରି ଦେଇଥିଲା। କାରଣ ବିକେନ୍ଦ୍ରୀକରଣ ବ୍ରିଟିଶ୍ ଶାସନ ପାଇଁ ବିପଦର କାରଣ ହୋଇପାରେ ବୋଲି ସେମାନେ ମନେ କରୁଥିଲେ।

ଦେଶ ସ୍ୱାଧୀନ ହେବା ପରେ ଯେତେବେଳେ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ କରାଗଲା, ସେତେବେଳେ ଅର୍ଥନୈତିକ କାର୍ଯ୍ୟକ୍ରମର ବିକେନ୍ଦ୍ରୀକରଣ ଓ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମ (Community Development Programme) ଉପରେ ଗୁରୁତ୍ୱ ଦିଆଗଲା। ଯଦିଓ ଏହା ପଞ୍ଚାୟତରାଜ ଗଠନ ବିଷୟରେ ସୂଚନା ଦେଲା ନାହିଁ, କିନ୍ତୁ ଗ୍ରାମାଞ୍ଚଳର ଲୋକେ କିପରି ସରସ ଓ ସୁନ୍ଦର ଜୀବନ ଯାପନ କରିବେ ସେଥିପ୍ରତି ଜାଗରଣ ସୃଷ୍ଟି କଲା। ବଡ଼ ଦୁଃଖର କଥା ଯୋଜନା ବିକେନ୍ଦ୍ରୀକରଣର ଏହି ପ୍ରଥମ ପଦକ୍ଷେପ ଅମଲାତାନ୍ତ୍ରିକ ନିୟନ୍ତ୍ରଣ ଦ୍ୱାରା ବାଧାପ୍ରାପ୍ତ ହେଲା। ଏହା ଜନସାଧାରଣ ତଥା ସେମାନଙ୍କ କାର୍ଯ୍ୟକ୍ରମ ସମ୍ପର୍କୀୟ ନିଷ୍ପତ୍ତିରେ ଆଶାନୁରୂପ ପରିବର୍ତ୍ତନ ଆଣିବାରେ ବିଫଳ ହେଲା(୭)। 'ଜନସାଧାରଣଙ୍କୁ ଉନ୍ନୟନ ପ୍ରକ୍ରିୟାରେ ସାମିଲ କରିବା ପାଇଁ ୧୯୫୭ ମସିହାରେ ବଳବନ୍ତ ରାଓ ମେହେଟ୍ଟା କମିଟି (Balwantray Mehta Committee) ପ୍ରତିଷ୍ଠା କରାଗଲା। ଏହା ଆଞ୍ଚଳିକ ଗଣତନ୍ତ୍ର (ପଞ୍ଚାୟତରାଜ) ବିନା ଗୋଷ୍ଠୀ ଉନ୍ନୟନ ଅସମ୍ଭବ ବୋଲି ମତାମତ ଦେବା ସଙ୍ଗେ ସଙ୍ଗେ ଗ୍ରାମ, ବ୍ଲକ୍ (ମଣ୍ଡଳ) ଓ ଜିଲ୍ଲା ସ୍ତରରେ ଗଣତାନ୍ତ୍ରିକ ବିକେନ୍ଦ୍ରୀକରଣ ପାଇଁ ପାରସ୍ପରିକ ସମ୍ପର୍କ ଥିବା ତିନି ସ୍ତରୀୟ (Three-tier) ପଞ୍ଚାୟତରାଜ ଗଠନ ପାଇଁ ସୁପାରିଶ କଲା। ଅଧିକାଂଶ ରାଜ୍ୟ ସରକାର ଏହି ପରିପ୍ରେକ୍ଷୀରେ ନିୟମମାନ ପ୍ରଣୟନ କଲେ। କିନ୍ତୁ ନିର୍ବାଚିତ ବ୍ୟକ୍ତିଙ୍କୁ ପ୍ରକୃତ କ୍ଷମତା ଓ ଦାୟିତ୍ୱ ହସ୍ତାନ୍ତର କରିବା କଥାଟା ଭୁଲିଗଲେ। କ୍ଷମତା ଓ ଦାୟିତ୍ୱ ପରିବର୍ତ୍ତେ ଉନ୍ନୟନ କାର୍ଯ୍ୟକୁ କାର୍ଯ୍ୟକାରୀ କରିବା ପାଇଁ ପଞ୍ଚାୟତରାଜ ଅନୁଷ୍ଠାନମାନଙ୍କୁ ଆଦେଶ ଦିଆଗଲା। ଫଳରେ ଏଗୁଡ଼ିକର କାର୍ଯ୍ୟରେ ଅବନତି ପରିଲକ୍ଷିତ ହେଲା। ରାଜନୈତିକ ନେତୃବୃନ୍ଦ ଓ ପଦସ୍ଥ ଅଫିସରମାନଙ୍କ ପ୍ରଭାବରେ ଜିଲ୍ଲାସ୍ତରୀୟ କମିଟି, ଗ୍ରାମ୍ୟ ତଥା ବ୍ଲକ୍ ସ୍ତରୀୟ କମିଟିମାନଙ୍କର କ୍ଷମତା କ୍ରମଶଃ ଲୋପ ହେବାକୁ ଲାଗିଲା। ଏପରିକି ପଞ୍ଚାୟତ ସଙ୍ଗଠନଗୁଡ଼ିକର ନିର୍ବାଚନ ବନ୍ଦ ହୋଇଗଲା।

ଏହାପରେ ଜନତା ସରକାର ଅମଳରେ ଅଶୋକ ମେହେଟ୍ଟା ନାମରେ ଏକ କମିଟି (Asok Mehta Committee) ୧୯୭୭ ମସିହାରେ ଗଠନ କରାଗଲା। ଏହା ତତ୍କାଳୀନ ପଞ୍ଚାୟତ ସଂସ୍ଥାଗୁଡ଼ିକୁ ଅନୁଧ୍ୟାନ କରି ପ୍ରଥମ ଥର ପାଇଁ ଜାତୀୟ ସ୍ତରରେ ଏକ ସାମ୍ବିଧାନିକ ସଂଶୋଧନ କରିବା ପାଇଁ ସୁପାରିଶ କଲା ଓ ପଞ୍ଚାୟତିରାଜଗୁଡ଼ିକ କିପରି ଗଣତାନ୍ତ୍ରିକ ପଦ୍ଧତିର ଏକ ସୁଗଠିତ ପୂର୍ଣ୍ଣ ଅବୟବ ହୋଇପାରିବ ସେଥିପାଇଁ ଏକ ଚିଠା ସଂଯୋଗ କଲା। ଏହି କମିଟିର ରିପୋର୍ଟ ୧୯୭୮ ମସିହା ଅଗଷ୍ଟ ମାସରେ ପ୍ରଦାନ କରାଗଲା(୮)।

୧୯୭୮ରୁ ୧୯୮୯ ମସିହା ଦୀର୍ଘ ୧୧ ବର୍ଷ ମଧ୍ୟରେ କ୍ଷମତା ବିକେନ୍ଦ୍ରୀକରଣ ସମ୍ପର୍କୀୟ କୌଣସି ବଳିଷ୍ଠ ପଦକ୍ଷେପ କେନ୍ଦ୍ରରେ ନିଆଯାଇ ପାରିଲା ନାହିଁ। ଏହି ଲକ୍ଷ୍ୟକୁ ପୂରଣ କରିବା ପାଇଁ ୧୯୮୯ ମସିହା ମେ ମାସରେ ୬୪ତମ ସମ୍ବିଧାନ ସଂଶୋଧନ ବିଲ୍ ଲୋକସଭାରେ ଆଗତ କରାଗଲା। କିନ୍ତୁ ବଡ଼ ଦୁଃଖର କଥା ଏହା ରାଜ୍ୟ ସଭାର ଅନୁମୋଦନ ଲାଭ କରି ପାରିଲା ନାହିଁ। ୭୨ତମ ସମ୍ବିଧାନ ସଂଶୋଧନ ବିଲ୍ ୧୯୯୧ ମସିହା ସେପ୍ଟେମ୍ବର ମାସରେ ଲୋକସଭାରେ ଆଗତ କରାଗଲା। ଏହା ପରେ ମିଳିତ ସଂସଦୀୟ କମିଟିକୁ ପ୍ରେରିତ ହେଲା ଓ ସେଠାରେ ମୂଳ ଚିଠାର କିଛି ପରିବର୍ତ୍ତନ ଅଣାଯାଇ ଲୋକସଭାକୁ ପଠାଗଲା। ଲୋକସଭା ଓ ରାଜ୍ୟ ସଭାରେ ଯଥାକ୍ରମେ ଡିସେମ୍ବର ୨୨ ଓ ୨୩ ତାରିଖରେ ଅନୁମୋଦନ ଲାଭ କଲା। ୧୯୯୩ ମସିହା ଏପ୍ରିଲ୍ ୨୦ ତାରିଖ ଦିନ ରାଷ୍ଟ୍ରପତିଙ୍କ ସମ୍ମତି ଲାଭ କରି ଏପ୍ରିଲ୍ ୨୪ ତାରିଖଠାରୁ ଏହା ଆଇନରେ ପରିଣତ ହେଲା।

ଏହି ଆଇନରେ ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ପଞ୍ଚାୟତରାଜର ମୁଖ୍ୟ କାର୍ଯ୍ୟ ବୋଲି ଦର୍ଶାଯାଇଛି। ସମ୍ବିଧାନର ୨୪୩ ଧାରା (ଜି)ରେ ଉଲ୍ଲେଖ କରାଯାଇଛି ଯେ ଏକାଦଶ ତାଲିକା (Schedule)ରେ ଯେଉଁ ୨୯ଟି ବିଷୟ ଅନ୍ତର୍ଭୁକ୍ତ କରାଯାଇଛି ତାହାର ଦାୟିତ୍ୱ ପଞ୍ଚାୟତରାଜ ସଂସ୍ଥାଗୁଡ଼ିକ ହାତରେ ନ୍ୟସ୍ତ। ଏହି ସମସ୍ତ ବିଷୟଗୁଡ଼ିକ ଉନ୍ନୟନ ସମ୍ପର୍କୀୟ। ଏଥିରେ କୃଷି, ଭୂମି ଉନ୍ନୟନ, ଭୂମି ସଂସ୍କାର, କ୍ଷୁଦ୍ର ଜଳସେଚନ, ଜଳ ପରିଚାଳନା, ପଶୁ ପାଳନ, ମାଛ ବ୍ୟବସାୟ, କ୍ଷୁଦ୍ର ଶିଳ୍ପ, ଖଦୀ, ଗ୍ରାମ୍ୟ ଓ କୁଟୀର ଶିଳ୍ପଠାରୁ ଆରମ୍ଭ କରି ଶିକ୍ଷା, ସ୍ୱାସ୍ଥ୍ୟ, ପରିମଳ ଏବଂ ଯୋଗାଯୋଗ ପର୍ଯ୍ୟନ୍ତ ଅନେକ ବିଷୟ ଏଥିରେ ସଂଯୋଗ କରାଯାଇଛି। ବିକାଶମୁଖୀ ସମାଜ ପକ୍ଷେ ଏ ସବୁ ବିଷୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ। ସ୍ୱାୟତ୍ତ ଶାସନ ବ୍ୟବସ୍ଥାର ଏକ ୟୁନିଟ୍ ଭାବେ କାର୍ଯ୍ୟ କରିବା ଲାଗି, ଏହା ଉପରେ ନ୍ୟସ୍ତ କରାଯାଇଥିବା କାର୍ଯ୍ୟଗୁଡ଼ିକ ଯଥେଷ୍ଟ ନୁହେଁ। ପଞ୍ଚାୟତରାଜ ସଂସ୍ଥା ଉପରେ ନ୍ୟସ୍ତ କରାଯାଇଥିବା ଦାୟିତ୍ୱଗୁଡ଼ିକ ମଧ୍ୟ ଆଂଶିକ ପ୍ରଶାସନ କୁହାଯାଇପାରେ କିନ୍ତୁ ରାଜସ୍ୱ, ପ୍ରଶାସନ, ନ୍ୟାୟ ବିଚାର ବ୍ୟବସ୍ଥା, ଅତ୍ୟାବଶ୍ୟକ ଜିନିଷପତ୍ର ଯୋଗାଣ ଓ ଅପରାଧ ନିୟନ୍ତ୍ରଣ ଆଦି ବିଷୟଗୁଡ଼ିକ ସମ୍ବିଧାନ ସଂଶୋଧନ ଆଇନରେ ସ୍ଥାନ ପାଇପାରି ନାହିଁ। ବିଶଦ ଆଇନ ପ୍ରଣୟନ କରିବା ଦାୟିତ୍ୱ ରାଜ୍ୟ

ସରକାରଙ୍କ ଉପରେ ନ୍ୟସ୍ତ କରାଯାଇଛି । ସେମାନେ ଯଦି ଚାହିଁବେ, ତେବେ ଉପରୋକ୍ତ ସମସ୍ତ ବିଷୟ କିମ୍ବା ସେଗୁଡ଼ିକ ମଧ୍ୟରୁ କେତେକ ବିଷୟ ଉପରେ ଆବଶ୍ୟକତା ଅନୁଯାୟୀ ଆଇନ ପ୍ରଣୟନ କରିପାରିବେ । ଫଳରେ ପଞ୍ଚାୟତରାଜ ଆଇନରେ ଥିବା ସମସ୍ତ ବ୍ୟବସ୍ଥା ସୁଷ୍ଠୁ ରୂପେ କାର୍ଯ୍ୟକାରୀ ହୋଇ ପାରିବା ସଙ୍ଗେ ସଙ୍ଗେ ସମସ୍ତ ବିକାଶ ପ୍ରକ୍ରିୟାରେ ଭାଗ ନେଇପାରିବେ । ଆଶା କରାଯାଏ, ପ୍ରତ୍ୟେକ ରାଜ୍ୟ ସରକାର ଏ ଦିଗରେ ଆଶୁ ପଦକ୍ଷେପ ନେବା ଦରକାର ।

**ପାଦଟୀକା :**

(୧) Kurukhetra, June, 1993, pp. 4 & 29

(୨) ଏସ୍. ଭି. ସରଣ, ପଞ୍ଚାୟତରାଜରେ ମହିଳାମାନଙ୍କ ଭୂମିକା–ଯୋଜନା–୧୩ ବର୍ଷ, ୬ଷ୍ଠ ସଂଖ୍ୟା, ମାର୍ଚ୍ଚ ୧୯୯୪, ପୃ. ୨୭ ।

(୩) କେ. ଜି. ଯୋଗଲେକର୍, ପଞ୍ଚାୟତିରାଜ ଓ ଜିଲ୍ଲା ପରିକଳ୍ପନା–ଯୋଜନା ୧୩ ବର୍ଷ, ୪ର୍ଥ ସଂଖ୍ୟା, ଜାନୁଆରୀ ୧୯୯୪, ପୃ. ୨୭ ।

(୪) L. P. Sharma: History of Ancient India (Pre-Historic Age to 1200 A.D.), pp. 322-323.

(୫) କେ. ଜି. ଯୋଗଲେକର୍, ପଞ୍ଚାୟତିରାଜ ଓ ଜିଲ୍ଲା ପରିକଳ୍ପନା–ଯୋଜନା ୧୩ ବର୍ଷ, ୪ର୍ଥ ସଂଖ୍ୟା, ଜାନୁଆରୀ ୧୯୯୪, ପୃ. ୨୭ ।
British Paramountcy and Indian Renaissance pt.1/edited by R. C. Majumdar, p. 842.

(୬) Panchayat Raj and District Planning by Yashwantrao Chavan Pratisthan, Mumbai, (Maharastra), p.12.

(୭) କେ. ଜି. ଯୋଗଲେକର୍–ଏଜନ

(୮) A. S. Ramasamy; Decentralised Democracy or despotic democracy? Kurukhetra-Jan. 1994, pp.36-37

(୯) George Mathew; From Legislation to a Movement, published in Kurukhetra, June 1993, p.22.
P. W. Purushotham; Development Administration : A Rural Prospective, pp.62-63.

ହରେକୃଷ୍ଣ ମହତାବ ରାଜ୍ୟ ଗ୍ରନ୍ଥାଗାର,
ଭୁବନେଶ୍ୱର ।




କୋଣାର୍କଠାରେ ବେଳାଭୂମି ପଦଯାତ୍ରୀଙ୍କୁ ପତାକା ହଲାଇ କ୍ରୀଡ଼ା ନିର୍ଦ୍ଦେଶକ ଶ୍ରୀ ଅନାଦି ସାହୁ ଉଦ୍‌ଘାଟନ କରୁଛନ୍ତି ।

OGP-MP-PTS (I&PR) 37-10,000-16-11-1994

VOL. LI No. 5 UTKAL PRASANGA Regd. No. O—BN—05/90
Licence No. C.R.N.P. 5—Licensed to post without Pre-payment



ଭୁବନେଶ୍ୱର ବିମାନଘାଟିଠାରେ ଭାରତର ମାନ୍ୟବର ଉପରାଷ୍ଟ୍ରପତି ଶ୍ରୀ କେ. ଆର୍. ନାରାୟଣନ୍ ସାମରିକ ଅଭିବାଦନ ଗ୍ରହଣ କରୁଛନ୍ତି ।



ସୂଚନା ଭବନଠାରେ ଆୟୋଜିତ ଏକ ପୁଷ୍ପ ପ୍ରଦର୍ଶନୀକୁ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ବୁଲି ଦେଖୁଛନ୍ତି ।

PRINTED AT ORISSA GOVERNMENT PRESS, CUTTACK-10